# ଭିମାଟି
# ଅଧରା
# ଏକତ୍ର

## ଗଣେଶ
## ନପାଉ ହାତି
## ମହିଷ ମର୍ଦ୍ଦିନୀ

ଗୋପାଳ ଛୋଟରାୟ



ଶ୍ରୀ ଗୋପାଳ ଛୋଟରାୟ

ଗୀତିନାଟ୍ୟ

# ଗଣେଶ

# ମହିଷ ମର୍ଦ୍ଦିନୀ

# ନପାହୁ ରାତି ନମରୁ ପତି



ପ୍ରକାଶକ :
ଅଭିରାମ ମହାପାତ୍ର
ଗ୍ର ନ୍ଥ ମ ନ୍ଦି ର
କଟକ-୨ : ବ୍ରହ୍ମପୁର

ମୁଦ୍ରକ :
ବିଶ୍ୱଜୀବନ ମିଶ୍ର
ସଂସାର ପ୍ରେସ
କଟକ

ପ୍ରଥମ ସଂସ୍କରଣ :
ସେପ୍ଟେମ୍ବର, ୧୯୭୨

ମୂଲ୍ୟ :
ସାଦା ବନ୍ଧେଇ ଟ ୪-୦୦
ବୋର୍ଡ ବନ୍ଧେଇ ଟ ୫-୦୦

ଓଡ଼ିଆ ନବନାଟ୍ୟ ଆନ୍ଦୋଳନର

ଦୁଇ ବିଖ୍ୟାତ କଳାକାର

ଶ୍ରୀ ଅନନ୍ତ ମହାପାତ୍ର

ଓ

ଶ୍ରୀ ହେମନ୍ତକୁମାର ଦାସଙ୍କ

ଶ୍ରୀକରରେ

ଓଡ଼ିଆ ଆଦିନାଟ୍ୟ ଆନ୍ଦୋଳନର

ଏଇ ପ୍ରତିକୃତି

ଉତ୍ସର୍ଗୀକୃତ

# କୃତଜ୍ଞତାଜ୍ଞାପନ

ଲେଖାଲେଖିରେ ଉତ୍ସାହ ପ୍ରଦାନ ମୋ' ମତରେ ଏକ ମାମୁଲି କଥା । ଉପସ୍ଥିତ କ୍ଷେତ୍ରରେ କେହି ମତେ ଉତ୍ସାହ ପ୍ରଦାନ କରିଥିଲେ ମୁଁ ତାହା ନମ୍ରତାରସହ ଏଡ଼ାଇ ଦେଇଥାନ୍ତି । କିନ୍ତୁ ମୋର ଗୀତିନାଟ୍ୟ ରଚନାରେ ପ୍ରଗତିବାଦୀ ଓ ପ୍ରତିଭାବାନ୍ ନାଟ୍ୟ-କାର ବନ୍ଧୁବର ଶ୍ରୀ ମନୋରଞ୍ଜନ ଦାସଙ୍କର ଯାହା ଭୂମିକା, ତାକୁ ଗୋଟିଏ କଥାରେ ମୁଁ କହିବି—ପୀଡ଼ନ । ସେ ଜୋର୍‌ଦେଇ ମତେ କହିଲେ—ଆପଣଙ୍କୁ ଗୀତିନାଟ୍ୟ ଲେଖିବାକୁ ହେବ ।

ମୁଁ ଲେଖିଲି ।

ଏ ଲେଖା ଲେଖି ମୁଁ ତୃପ୍ତ; ଆଜି ମୋର ଏ ପରମ ତୃପ୍ତି ପାଇଁ ମୁଁ ଶ୍ରୀଯୁକ୍ତ ଦାସଙ୍କ ନିକଟରେ ଏକାନ୍ତଭାବେ କୃତଜ୍ଞ ।

ଗୋପାଳ ଶ୍ରେଷ୍ଠବନ୍ଧୁ

# ମୁଖବନ୍ଧ

ଆମ ନାଟ୍ୟ ଜଗତରେ 'ଅପେରା' ଶବ୍ଦଟି ବର୍ତ୍ତମାନ ଏକ **catch word** ବା ନିତିଦିନିଆ ଶବ୍ଦରେ ପରିଣତ ହୋଇଛି । 'ଅପେରା' (**Opera**) ଏକ ଇଂରାଜୀ ଶବ୍ଦ । ଚେମ୍ବର୍‌ସ୍ ଅଭିଧାନ ତଥା ଇଂରାଜୀ **Book of Knowledge** ଅନୁଯାୟୀ **Opera** ଶବ୍ଦର ଅର୍ଥ ହେଲା—**Musical Drama**, ଯାହାର ଓଡ଼ିଆ ଭାଷାନ୍ତର ହେଲା—ଗୀତିନାଟ୍ୟ । ଅବଶ୍ୟ ସୁଆଙ୍ଗ, ଯାତ୍ରା ବା ଗୀତାଭିନୟ ଆଦି ଯେଉଁସବୁ ପ୍ରଚଳିତ ଶବ୍ଦ ରହିଛି, ତାହା ଗୀତିନାଟ୍ୟର ପରିଭାଷା ବା ସମ-ଅର୍ଥ-ବୋଧକ ଶବ୍ଦ ବ୍ୟତୀତ ଅନ୍ୟ କିଛି ନୁହେଁ । ଆମ ଶବ୍ଦଭଣ୍ଡାରକୁ ବହୁ ବିଦେଶୀ ଶବ୍ଦର ଆମଦାନୀ ପରି ଅପେରା ଶବ୍ଦଟିର ମଧ୍ୟ ଆମଦାନୀ ଘଟିଛି ଓ ଏହା ଏକ ସ୍ଥାୟୀ ଆସନରେ ପ୍ରତିଷ୍ଠିତ ହୋଇପାରିଛି । ଏହି ଦୃଷ୍ଟିରୁ ଗୀତିନାଟ୍ୟ ରଚନାର ତାତ୍ତ୍ୱିକ ଆଲୋଚନା କଲେ ଏକଥା ସ୍ୱୀକାର କରିବାକୁ ହେବ ଯେ, ଗୀତିନାଟ୍ୟ ହେଉଛି ସର୍ବତୋଭାବେ ଏକ ନାଟକ । ସାଧାରଣ ମଞ୍ଚ ନାଟକଠାରୁ ଏହାର ପାର୍ଥକ୍ୟ ଏତିକି ଯେ ଏହାର ବିଷୟବସ୍ତୁର ପରିପ୍ରକାଶ ପାଇଁ କେବଳ ସଂଳାପର ଆଶ୍ରୟ ନିଆ ନଯାଇ କେତେବେଳେ ସଂଳାପ ମିଶ୍ରିତ ଗୀତ ଓ କେତେବେଳେ କେବଳ ହିଁ ଗୀତକୁ ମାଧ୍ୟମରୂପେ ଗ୍ରହଣ କରାଯାଇଥାଏ ।

ପ୍ରାୟ ଅର୍ଦ୍ଧଶତ ବର୍ଷ ତଳେ, ଆମ ମୁକ୍ତମଞ୍ଚମାନଙ୍କରେ ପ୍ରଥମେ ଯେତେବେଳେ ଗୀତିନାଟ୍ୟ ଅଭିନୀତ ହେଲା, ସେତେବେଳେ ଆମ ଦର୍ଶକ ଏକ ପ୍ରକୃତ ରସପୂର୍ଣ୍ଣ ନାଟକର ସ୍ୱାଦ ଚାଖିବାର ସୁଯୋଗ ଲାଭ କଲେ । ତଦବଧି ପ୍ରଚଳିତ ଲୀଳା ଓ ରାମକଥା ପ୍ରଭୃତି

ବର୍ଣ୍ଣନାଧର୍ମୀ ପରିବେଶରୁ ମୁକ୍ତ ହୋଇ ପୂର୍ଣ୍ଣ ନାଟକୀୟ ଚରିତ ତଥା ସ୍ୱତଃ-ପ୍ରବାହିତ ଘଟଣାବଳୀରେ ରସାଣିତ ଗୀତିନାଟ୍ୟର ପରିବେଷଣ ଓଡ଼ିଆ ନାଟ୍ୟକଳା ମଣ୍ଡଳରେ ଏକ ନୂତନ ଦିଗନ୍ତର ଦ୍ୱାର ଉନ୍ମୋଚନ କଲା । ସୁଧୀ-ଜ୍ଞାନୀ-ବୟୋବୃଦ୍ଧ ଦର୍ଶକ ତଥା ସରଳ ନିରକ୍ଷର ଗ୍ରାମବାସୀ ଆଦି ସବୁ ଶ୍ରେଣୀର ଜନଗଣଙ୍କ ମନୋରଞ୍ଜନ ପାଇଁ ଗୀତିନାଟ୍ୟ ହିଁ ହେଲା ସର୍ବାଧିକ ଲୋକପ୍ରିୟ ମାଧ୍ୟମ ।

ଆସିଲା ଦ୍ୱିତୀୟ ବିଶ୍ୱଯୁଦ୍ଧ । ଯୁଦ୍ଧର କରାଳ ସ୍ପର୍ଶରେ ପୃଥିବୀ ବକ୍ଷରେ ବହୁ ଅନାକାଙ୍କ୍ଷିତ ପରିବର୍ତ୍ତନ ଘଟିଗଲା । ଯୁଦ୍ଧ ପରେ ପରେ ଗୀତିନାଟ୍ୟର ସୂତ୍ର ଆକସ୍ମିକଭାବେ ଛିନ୍ନ ହୋଇଗଲା । ଗୋପାଳ ଦାସ, ବୈଷ୍ଣବ ପାଣି, କୃଷ୍ଣପ୍ରସାଦ ବସୁ, ଜଗନ୍ନାଥ ପାଣି, ବାଳକୃଷ୍ଣ ମହାନ୍ତି, ରାମଚନ୍ଦ୍ର ସ୍ୱାଇଁ ପ୍ରଭୃତିଙ୍କ ପରବର୍ତ୍ତୀ ଗୀତିନାଟ୍ୟକାରମାନେ ଯେକୌଣସି କାରଣରୁ ହେଉ, ସେମାନଙ୍କର ସାମର୍ଥ୍ୟ ନହେଲେ ବି ସ୍ୱାତନ୍ତ୍ର୍ୟ ହରାଇ ବସିଲେ । ଯୁଦ୍ଧୋତ୍ତର ତଥା ସ୍ୱାଧୀନତା ପରବର୍ତ୍ତୀ କାଳରେ ଆମର ବହୁ ପ୍ରତିଷ୍ଠିତ 'ଅପେରା ପାର୍ଟି' ଗୀତିନାଟ୍ୟ ନାମରେ ଅଣଓଡ଼ିଆ ଲେଖାରୁ ଅନୁବାଦ କରି ଯାହା ପରିବେଷଣ କଲେ, ସେଥିରେ 'ଗୀତି' ବିଲୁପ୍ତ ହେଲା ଓ 'ନାଟ୍ୟ' କଳଙ୍କିତ ହେଲା ।

ତା'ପରେ—୧୯୬୦ ମସିହା ନଭେମ୍ବର ମାସ ମାର୍ଗଶିର ଶୁକ୍ଳ ଦଶମୀ । ସେଇଦିନ କଟକ ଆକାଶବାଣୀ କେନ୍ଦ୍ରରୁ ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟ 'ରଙ୍ଗସଭା' ପ୍ରସାରିତ ହେଲା (୧) । ଏହା ହିଁ

(୧) ରଙ୍ଗସଭା ତଥା ବୈଷ୍ଣବ ପାଣି ଓ ବାଳକୃଷ୍ଣ ମହାନ୍ତିଙ୍କର ପ୍ରାୟ ଦଶଗୋଟି ଗୀତିନାଟ୍ୟ ଏହି ଲେଖକଙ୍କ ଦ୍ୱାରା ବେତାର-ରୂପାନ୍ତରିତ ହୋଇ ଆକାଶବାଣୀରେ ପ୍ରସାରିତ ହୋଇଛି ।

ହେଉଚି କଟକ ଆକାଶବାଣୀରୁ ପ୍ରଚାରିତ ପ୍ରଥମ ଓଡ଼ିଆ ଗୀତିନାଟ୍ୟ । ରଙ୍ଗସଭା ପାଣିଗ୍ରାହୀଙ୍କ ଏକ ଅନବଦ୍ୟ ରଚନା । ଅତି ଶୁଭ ମୁହୂର୍ତ୍ତରେ ଶ୍ରୀଯୁକ୍ତ ପାଣି ଏ ଲେଖାରେ ହାତ ଦେଇଥିଲେ । କିନ୍ତୁ ତାଠୁ ବଳି ଶୁଭତର ମୁହୂର୍ତ୍ତରେ ଆକାଶ-ବାଣୀରୁ ରଙ୍ଗସଭା ପ୍ରଚାରିତ ହୋଇଥିଲା । କାରଣ ସେଇ ମୁହୂର୍ତ୍ତରୁ ହିଁ ଓଡ଼ିଆ ଆଦିନାଟ୍ୟ ଆନ୍ଦୋଳନର ପ୍ରତୀକ ଗୀତିନାଟ୍ୟର ହେଲା ପୁନର୍ଭବ ବା ପୁନରୁତ୍‌ଥାନ— **Renaissance.** ଯେଉଁମାନେ ଗୀତିନାଟ୍ୟ ସହିତ ପରିଚିତ, ସେମାନେ ପ୍ରଚଣ୍ଡ ଗ୍ରୀଷ୍ମତାପ ପରେ ପହିଲି ବର୍ଷାର ଶୀତଳ ସ୍ପର୍ଶ ପରି ତୃପ୍ତି ଓ ଆଶ୍ୱସ୍ତି ଲଭ କଲେ । ଯେଉଁମାନେ ନବୀନ, ସେମାନେ ପାଇଲେ ଏକ ନୂତନତାର ସ୍ୱାଦ—ଯେଉଁ ସ୍ୱାଦ ଲଭ କରିଥିଲେ ଗୀତିନାଟ୍ୟ ଆଦି କାଳର ଦର୍ଶକ । ଫଳରେ ସେଇ ଶୁଭ ମୁହୂର୍ତ୍ତଠାରୁ ଏ ଅବଧି ପାଖେ ବାରବର୍ଷ କାଳ ସାମ୍ପ୍ରତିକ ଓଡ଼ିଶାର ବହୁ ସାଂସ୍କୃତିକ କାର୍ଯ୍ୟକ୍ରମରେ ଗୀତିନାଟ୍ୟ ଏକ ନିର୍ଦ୍ଦିଷ୍ଟ ଆସନ ଲଭ କରି ଆସିଛି । ପୁରାତନ ଗୀତିନାଟ୍ୟ ଅଭିନୀତ ହେବା ସଙ୍ଗେ ସଙ୍ଗେ ନୂତନ ଲେଖା ମଧ୍ୟ ହେଉଅଛି । ମୋଟ୍-ଉପରେ, ବାର ବର୍ଷର ଏଇ ଯୁଗକୁ ଗୀତିନାଟ୍ୟର ଯୁଗ କହିଲେ ଯଦି ଅସମୀଚୀନ ବୋଧହୁଏ, ତେବେ ଏଇ ବାର ବର୍ଷରେ ଗୀତିନାଟ୍ୟ ତାହାର ଏକ ସ୍ୱାଗତଯୋଗ୍ୟ ଯୁଗ ସୃଷ୍ଟି କରି ପାରିଛି କହିଲେ ଅସଙ୍ଗତ ହବ ନାହିଁ ।

ଲକ୍ଷ୍ୟ କରିବାର କଥା, ଯେଉଁ ସମୟରେ ଗୀତିନାଟ୍ୟର ପୁନରୁତ୍‌ଥାନ ହେଲା ଗୀତିନାଟ୍ୟ ଏମିତି ଅସାଧାରଣ ଭାବେ ଲୋକପ୍ରିୟ ହୋଇ ପାରିଛି, ଠିକ୍ ସେଇ ସମୟଟି ହଉଛି ଓଡ଼ିଆ

ନବନାଟ୍ୟ ଆନ୍ଦୋଳନର ଯୁଗ । ଆମର ବହୁ ପ୍ରତିଭାବାନ୍ ନାଟ୍ୟକାର **off-beat, absurd** ବା ଉଦ୍ଭଟ ନାଟକ ରଚନାରେ ବ୍ରତୀ ହୋଇଛନ୍ତି । ଏଭଳି ନାଟକ ଆମର ପ୍ରଚଳିତ **(Well-made)** ମଞ୍ଚନାଟକ ପ୍ରତି ଏକ ଆହ୍ୱାନ ବୋଲି ହୁଏତ ଆଶଙ୍କା କରାଯାଉଛି । କିନ୍ତୁ ଗୀତିନାଟ୍ୟ ତାହାର ସ୍ୱୀୟ ମୌଳିକତା ତଥା ପ୍ରଭାବଶାଳୀ ନାଟକୀୟତା ଦୃଷ୍ଟିରୁ ଏଭଳି କୌଣସି ଆହ୍ୱାନର ସମ୍ମୁଖୀନ ହବାର ଅବକାଶ ନାହିଁ । ଅନ୍ୟପକ୍ଷରେ ଦୁଇଟି ଭିନ୍ନମୁଖୀ ନାଟ୍ୟକଳା ଏକ ସମୟରେ ସମଧର୍ମୀ ଦର୍ଶକ ଓ ସମାଲୋଚକମାନଙ୍କ ସୁଦୃଷ୍ଟି ଆକର୍ଷଣ କରିପାରିବ ।

ଗୀତିନାଟ୍ୟ ଫେରିଆସିବ । ଏହାର ସ୍ଥିତି ଓ ବସ୍ତୁତ ଅନସ୍ୱୀକାର୍ଯ୍ୟ । କିନ୍ତୁ ଦେଶ କାଳ ପାତ୍ରର କ୍ରମ-ପରିବର୍ତ୍ତିତ ଅବସ୍ଥା ଦୃଷ୍ଟିରୁ ଗୀତିନାଟ୍ୟର ଶୈଳୀ ବା **form**ର କି ଆଙ୍ଗିକ ପରିବର୍ତ୍ତନ ଲୋଡ଼ା, ତା'ର ବିଚାର ଆଗାମୀ ଦଶକର ଲେଖକ, ସମାଲୋଚକ ତଥା ରୁଚିଶୀଳ ଦର୍ଶକମାନେ ହିଁ କରିବେ ।

କଟକ-୨
ଜୁନ୍, ୧୯୭୨

**ଗୋପାଳ ଛୋଟରାୟ**

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ ଗିରିକନ୍ଦର କୈଳାସ । କୈଳାସପତି ଶିବ ଅନୁପସ୍ଥିତ । ପାର୍ବତୀ ଏକାକିନୀ । ଦେଖିଲେ ଜଣାଯାଏ, ସେ ସ୍ୱାମୀଙ୍କ ପ୍ରତୀକ୍ଷାରେ ଅଛନ୍ତି । କିଛି ସମୟ ପରେ ଗିରିକନ୍ଦରରେ ଶିବ ପ୍ରବେଶ କଲେ । ସେ କ୍ଳାନ୍ତ—ଅବସନ୍ନ । ]

ପାର୍ବତୀ—ଏ କଣ ପ୍ରଭୁ ? ତୁମେ ଏପରି ବିମର୍ଷ ଦେଖାଯାଉଚ ? ତୁମ ମୁଖମଣ୍ଡଳରେ ବିଷାଦର ଛାୟା ? କଣ ହୋଇଚି ଭୂତନାଥ ?

ଶିବ—ଭାଗ୍ୟବଳରୁ ଗୋଟାଏ ଅତି ଅଘଟଣରୁ ମୁଁ ରକ୍ଷା ପାଇଗଲି ।

ପାର୍ବତୀ—କି ଅଘଟଣ କୈଳାସପତି ?

ଶିବ—ଅତୀତ କଥା ସ୍ମରଣ କର ଉମା ! ତୁମକୁ ମୁଁ ଗୁପ୍ତମନ୍ତ୍ର ଦାନ କଲାବେଳେ ଯେଉଁ ଶୁକପକ୍ଷୀ ବୃକ୍ଷଡାଳରେ ଲୁଚିରହି ମୋ ଅଜ୍ଞାତରେ ମନ୍ତ୍ର ଶିକ୍ଷା କରୁଥିଲା, ସେ ପକ୍ଷୀ ମୋ ଭୟରେ ତ୍ରିଭୁବନ ପରିକ୍ରମା କରି, କେଉଁଠି ସ୍ଥାନ ନ ପାଇ, ଶେଷରେ ବ୍ୟାସଦେବଙ୍କ ପତ୍ନୀଙ୍କ ଗର୍ଭରେ ଯାଇ ଆଶ୍ରୟ ନେଲା ।

ପାର୍ବତୀ—ତା' ପରେ ?

ଶିବ—ଶୁକପକ୍ଷୀକୁ ମୁକ୍ତ ଦେବାଲାଗି ମୁଁ ବ୍ୟାସପତ୍ନୀଙ୍କୁ କହିଲି । ମାତ୍ର ସେ ମୋ କଥାରେ କର୍ଣ୍ଣପାତ କଲେ ନାହିଁ ।

ପାର୍ବତୀ—ଦେବଦେବ ମହାଦେବଙ୍କ ଆଜ୍ଞାକୁ ବ୍ୟାସପତ୍ନୀ ଅବଜ୍ଞା କଲେ ?

ଶିବ—ହଁ ପ୍ରିୟେ, ଫଳରେ ମୋର ସର୍ବାଙ୍ଗ କୋପ ପ୍ରଜ୍ୱଳିତ ହେଲା । ଥରିଉଠିଲା ହାତର ଡମ୍ବରୁ—ତ୍ରିନୟନରୁ ଅଗ୍ନି ସ୍ଫୁରଣ ହେଲା । ତ୍ରିଶୂଳ ପ୍ରହାର କରି ମୁଁ ବ୍ୟାସପତ୍ନୀଙ୍କୁ ହତ୍ୟା କରିବା ପାଇଁ ଉଦ୍ୟତ ହେଲି···

ପାର୍ବତୀ—ପ୍ରଭୁ ! (ପାର୍ବତୀ ଆତଙ୍କଗ୍ରସ୍ତା ହୋଇଉଠିଲେ ।)

ଶିବ – ଠିକ୍ ଏତିକବେଳେ ସ୍ୱୟଂ ବ୍ୟାସଦେବ ଆସି ପହଞ୍ଚିଗଲେ । ବହୁ ଅନୁନୟ ବିନୟ କରି ମୋ କ୍ରୋଧ ଶାନ୍ତ କରାଇଲେ । ବ୍ୟାସପତ୍ନୀଙ୍କ ଜୀବନ ରକ୍ଷା ହୋଇଗଲା ।

ପାର୍ବତୀ—କିନ୍ତୁ ହେ ମହେଶ୍ୱର, ଏଇ ସାମାନ୍ୟ କଥାରୁ ତୁମେ ଯେ ସ୍ତ୍ରୀହତ୍ୟା ଅପରାଧରେ ଭାଗୀ ହୋଇଥାନ୍ତ !

ଶିବ—ବ୍ୟାସଦେବ ମଧ୍ୟ ମତେ ଠିକ୍ ଏଇ କଥା କହିଲେ । ଆଉ ସେଇ ଚିନ୍ତାରେ···

ପାର୍ବତୀ—କିନ୍ତୁ କେବଳ ଚିନ୍ତା କଲେ ତ ତମର ଏ ନିଷ୍ଠୁରପଣ ପାଇଁ କେହି ତମକୁ ନିର୍ଦ୍ଦୋଷ ବୋଲି କହିବ ନାହିଁ ।

( ଗୀତ )

କାଳେ କାଳେ ଶିବ ହେ, ତମ ନିଷ୍ଠୁର ଭାବ
ତେଜି ନ ପାରିଲ—ହେଜି ନ ପାରିଲ
ନାରୀହନ୍ତା କାହିଁ ନ ପାଏ ଠାବ । ୦ ।

ଶିବ—ଯେଉଁ ଅପରାଧରୁ ମୁଁ କ୍ଷାନ୍ତ ହେଲି, ସେଥିପାଇଁ ମତେ 'ଆଉ ଭର୍ତ୍ସନା କରୁଚ କାହିଁକି ଗୌରୀ ?

ପାର୍ବତୀ—ଏ କଥା ମୁଁ ଯେତେ ଚିନ୍ତା କରୁଚି, ମୋ ମନରେ ବିଷର ଜ୍ୱାଳା ସେତେ ଭରିଯାଉଚି ।

( ଗୀତ )

ତ୍ରିଭୁବନକରତା ଯିଏ,
ତାଙ୍କୁ ଏହା ଶୋଭା କି ପାଏ ?
ଶିବ ହୋଇ ନିଜେ ଅଶିବ ହୋଇଲେ
କେ ଚଳିବ କହ ସଂସାର-ନାବ ।
କାଳେ କାଳେ ଶିବ ହେ··· । ୧ ।

ରକ୍ଷକ ହୋଇ ନିଜେ ଭକ୍ଷକ ହେଲେ ଏ ସଂସାର ଚଳିବ କେମିତି ପ୍ରଭୁ ? ଆଉ କିଏ ବା କାହିଁକି ଶିବପୂଜା କରିବ ?

ଶିବ—ତୁମେ ମୋ ଉପରେ ବୃଥା ଦୋଷାରୋପ କରୁଚ ଭବାନି ! ତମ ପ୍ରତି ତ ମୁଁ କେବେ କିଛି ଅନ୍ୟାୟ ଆଚରଣ କରିନାହିଁ । ସବୁବେଳେ ତମ ପ୍ରତି ମୋର ସ୍ନେହ ଶ୍ରଦ୍ଧା ପୂର୍ଣ୍ଣ ରହିଚି ।

ପାର୍ବତୀ—ସେ କଥା ମତେ ଆଜି ଏଠି ମୁହଁ ଖୋଲି କହିବାକୁ ପଡ଼ୁଚି ପ୍ରଭୁ !

(ଗୀତ)

ସ୍ନେହ କଥା କୁହ ଯେ ସାଇଁ
ମନ ମଧ୍ୟେ ଟିକିଏ ନାହିଁ,
ଜନ୍ମେ ଜନ୍ମେ ମତେ କରିଥାଅ ହତ
ସେ କଥା ଟିକିଏ ହୃଦରେ ଭାବ
କାଳେ କାଳେ ଶିବ ହେ··· । ୨ ।

ଶିବ—(ରାଗି) ଉମା, ତମ ମନରେ ଯଦି ଏ ଭାବନା ଅଛି, ତେବେ ଆଜି ତୁମେ ଏ କୈଳାସପୁରୀ ଛାଡ଼ି ଚାଲିଯାଅ । ତମ ସହିତ ମୋର କୌଣସି ସମ୍ପର୍କ ନାହିଁ ।

ପାର୍ବତୀ—ଏ କଣ କହୁଚ ସ୍ୱାମୀ—ମତେ ତୁମେ ତ୍ୟାଗ କରିବ ?
ଏହାର ପରିଣାମ କଣ ହେବ ଭାବିଚ ?

ଶିବ—ପରିଣାମ ଯାହା ହେଉନା କାହିଁକି, ତୁମେ ଯାଅ—ଚାଲିଯାଅ ।

( ଗୀତ )

ଭାଙ୍ଗିପଡ଼ୁ ପଛେ କଇଲାସ ଚୂଡ଼ା
ଅମ୍ବର ଯାଉ ଫାଟି,
ଫାଟିଯାଉ ପଛେ ଧାର ଧାର ହୋଇ
ଧରଣୀ ତଳର ମାଟି ।

ଟଳିମଳ ହେଉ ବାସୁକୀ ଆସନ
ସାତ ଖଣ୍ଡ ହେଉ ଧରା,
ବଜ୍ର ବିଜୁଳି ଏକାକାର ହୋଇ
ବରଷୁ ମୂଷଳଧାରା ।

ଏ ମୋର ଆଦେଶ ଶୁଣ ଭଗବତୀ
ନିମିଷକେ ହୁଅ ଦୂର,
ଯହିଁ ଇଚ୍ଛା ତହିଁ ଚାଲିଯାଅ ଏବେ
ତେଜି କଇଲାସପୁର ।

ପାର୍ବତୀ—କେବେ ତୁମ ଆଦେଶ ଅମାନ୍ୟ କରିନି । ଶ୍ରୀଚରଣତଳେ ପ୍ରଣାମ କରି ବିଦାୟ ନେଉଚି । (ପ୍ରସ୍ଥାନ)

# ଦ୍ୱିତୀୟ ଦୃଶ୍ୟ

[ ନଦୀକୂଳ । ଶିବ ପରିତ୍ୟକ୍ତା ପାର୍ବତୀ କୈଳାସକନ୍ଦରରୁ ଆସି ନଦୀକୂଳରେ ଖଣ୍ଡିଏ ପ୍ରସ୍ତର ଉପରେ ଉପବେଶନ କରିଛନ୍ତି । ମୁଖମଣ୍ଡଳରେ ବିଷାଦର ଛାୟା ସୁସ୍ପଷ୍ଟ । ଏତିକବେଳେ ଦେବର୍ଷି ନାରଦ ଆସିଲେ । ]

ନାରଦ—ନାରାୟଣ···ନାରାୟଣ···

ପାର୍ବତୀ—ପ୍ରଣାମ ଗ୍ରହଣ କରନ୍ତୁ ଦେବର୍ଷେ !

ନାରଦ—ଏ କିଣ ? ମୋ' ଦୃଷ୍ଟିଶକ୍ତିରେ ବିଭ୍ରମ ଘଟିନାହିଁ ତ ! ଶୈଳସୁତା ଦେବୀ ଭଗବତୀ ଏ ନଦୀକୂଳରେ ଏକାକିନୀ ! ସାଥିରେ କୈଳାସପତି ନାହାନ୍ତି !

ପାର୍ବତୀ— କୈଳାସପତିଙ୍କ ପାଖରେ ମୋର ଆଉ ସ୍ଥାନ ନାହିଁ । ଅତି ସାମାନ୍ୟ କଥାରୁ ସେ ମୋତେ ତ୍ୟାଗ କରିଛନ୍ତି ।

ନାରଦ—ନାରାୟଣ···ନାରାୟଣ···ଭୋଳାନାଥ ସେ—କୋପେ ବର କି ତପେ ବର । ସାମାନ୍ୟ ଅସାମାନ୍ୟ ବିଚାର ତାଙ୍କର ନାହିଁ ।···ଦେବୀ, ତେବେ ବର୍ତ୍ତମାନ ଯିବେ କୁଆଡ଼େ ?

ପାର୍ବତୀ—କାର୍ତ୍ତିକେୟ ନିକଟକୁ ଯାଇଥିଲି—କିନ୍ତୁ···

ନାରଦ—ସେ ମଧ୍ୟ ତାଙ୍କ ପୁରରେ ସ୍ଥାନ ଦେଲେ ନାହିଁ ?

ପାର୍ବତୀ—ନା ।

ନାରଦ—ନାରାୟଣ, ନାରାୟଣ ! ଗୋଟିଏ ପୁଅର ମା' ହେଲେ ଏଇ ଅବସ୍ଥା ଭୋଗିବାକୁ ହୁଏ । ଯଦି ଆଉ ଗୋଟିଏ ପୁଅ ଥା'ନ୍ତା, ତେବେ ଏ ପୁଅ ତଡ଼ିଦେଲେ ସେ ପୁଅ ଆଦର କରି ଘରେ ସ୍ଥାନ ଦିଅନ୍ତା ।

ପାର୍ବତୀ—ମତେ ଉପାୟ କହନ୍ତୁ ଦେବର୍ଷି ନାରଦ—ମୁଁ କ
ବୁଦ୍ଧି କରିବ ? ଶିବଙ୍କୁ ପୁଣି କପରି ପ୍ରାପ୍ତ ହେବ ?
ନାରଦ—ତପସ୍ୟା – ଯୁଗେ ଯୁଗେ ତପସ୍ୟାବଳରେ ହର-ପାର୍ବତୀଙ୍କ
ମିଳନ ଘଟିଛି । ଏଥର ମଧ୍ୟ ସେଇ ତପ ଆଚରଣ କରନ୍ତୁ ।

(ଗୀତ)

ଯୁଗେ ଯୁଗେ ଯନ୍ତ ଶ୍ମଶାନପନ୍ତ
ତପବଳେ ତାଙ୍କ ଟଳିଛି ମନ୍ତ ।
ହର ସେବି ବର ପାଇଛି ଯିଏ
ତା'ର ସମ ଭାଗ୍ୟବନ୍ତୀ ବା କିଏ, ସେ···
ଆସିଛି ପୁଣି ସେ ଯୋଗ ଯେ,
ସାଜ ତପସ୍ୱିନୀ ଦେବୀ କାତ୍ୟାୟନୀ
ଆଚରନ୍ତୁ ତପ ଯୋଗ ଯେ । ୧ ।

ପାର୍ବତୀ—ଯଦି ମୋ' ତପସ୍ୟାବଳରେ ତାଙ୍କ ଟାଣପଣ ନ ଭାଙ୍ଗେ ?
ନାରଦ—ଏ କଥା କହି ମତେ ଆଉ ଲଜ୍ଜା ଦିଅନ୍ତୁ ନାହିଁ ଦେବୀ !
ଗୌରୀଙ୍କ ତପସ୍ୟାରେ ପୁଣି ହରଙ୍କ ଟାଣପଣ ଭାଙ୍ଗିବ ନାହିଁ ?
···ଆଉ ବିଳମ୍ବ ନ କରି ତପସ୍ୟା ଆରମ୍ଭ କରନ୍ତୁ ।

(ଗୀତ)

ସୁବାସିତ ରାଗ କୁଙ୍କୁମ ବୋଳି
ତଟିନୀ ପୟରେ ତନୁ ପଖାଳି,
ଗୈରିକ ବସନେ ହୋଇ ଶୋଭିତା
ଗିରିଗୁହା କୋଳେ ଗିରିଦୁହିତା, ହେ
ଗୂଢ଼ ତପ କର ବସି ଯେ,
ଯଥାକାଳେ ପୁଣି ଦରଶନ ଦବ
କଳିହା ନାରଦ ଆସି ଯେ । ୨ ।

ନାରଦ—ମୁଁ ଏବେ ବିଦାୟ ନେଉଛି ଦେବୀ ! ନାରାୟଣ···
ନାରାୟଣ ! (ପ୍ରସ୍ଥାନ)

ପାର୍ବତୀ—ନାରଦ ମୁନି ଠିକ୍ କହିଯାଇଛନ୍ତି । ମୁଁ ତପ ଆଚରଣ କରିବି, ଆଜି ଦେଖିବି ମତେ ତ୍ୟାଗ କରି ପ୍ରଭୁ କେତେ ଦିନ ଏକାକୀ ରହିପାରିବେ ।
(ଅଦୂରବର୍ତ୍ତୀ କନ୍ଦ୍ରିବିନ୍ଧ୍ୟା ପର୍ବତର ଗୁମ୍ଫା ମଧ୍ୟକୁ ପ୍ରବେଶ କଲେ । କିଛି କାଳ ଅତିବାହିତ ହେଲା । ସେଦିନ ପାର୍ବତୀ ପୁଣି ଗୁମ୍ଫା ଦ୍ୱାରକୁ ଆସିଲେ ।)

ପାର୍ବତୀ—ଦିନ ବଢିଯାଉଛି, ବହୁକାଳୁ ସ୍ନାନ କରିନି । କୁଙ୍କୁମ ଆଦି ଅଙ୍ଗରାଗ ପ୍ରଲେପ କରି ଯାଏ ନଦୀରେ ସ୍ନାନ କରି ଆସେ—
(ଅଜ୍ଞାତରେ ନିଜ ଅଙ୍ଗଛଡ଼ା ମଳିଖରେ ପିତୁଳାଟିଏ ଗଢ଼ୁଥାନ୍ତି ।) ଏଁ—ଏ କିଣ ? ଦେହର ମଳିଖ ଛଡ଼ାଇ ଫିଙ୍ଗିଦବାକୁ ଯାଉଥିଲି—କିନ୍ତୁ ମୋର ଅଜାଣତରେ ସେଇ ମଳିଖ ପିଣ୍ଡୁଳାରେ ଗୋଟିଏ ପିତୁଳା ଗଢ଼ି ସାରିଲିଣି । ମୋ ଅଙ୍ଗଜାତ ପିତୁଳା ଏ । ଯଦି ଇଏ ଜୀବନ୍ୟାସ ପାଇପାରନ୍ତା !! ପ୍ରଭୁ ଗୋଲୋକବିହାରୀ—ସତେ ମୋ' ମନକାମନା ପୂର୍ଣ୍ଣ ହବ !

(ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ବିଷ୍ଣୁ ଆବିର୍ଭୂତ ହେଲେ)

ବିଷ୍ଣୁ—ତମର ମନକାମନା ପୂର୍ଣ୍ଣ ହେଇଛି ଦେବୀ ! ତମ ଅଙ୍ଗମଳିଖ ଗଢ଼ା ପିତୁଳାକୁ ମୁଁ ଜୀବନ୍ୟାସ କରୁଛି । ତମ ମାନସପୁତ୍ର ଏ ବାଳକ ମହାଜ୍ଞାନୀ ସିଦ୍ଧିଦାତା ଗଣନାୟକ ହେବ । ସବୁ ଦେବଦେବୀଙ୍କ ଅଗ୍ରେ ଏ ପୂଜା ପାଇବ । ଜୀବନ୍ୟାସ ସଙ୍ଗେ ସଙ୍ଗେ ମୁଁ ଏହାକୁ ମହାଶକ୍ତି ପ୍ରଦାନ କରୁଛି ।

( ବିଷ୍ଣୁ ଅନ୍ତର୍ହିତ ହେବା ସଙ୍ଗେ ସଙ୍ଗେ ପାର୍ବତୀ ଦେଖିଲେ ତାଙ୍କ ସମ୍ମୁଖରେ ଦଣ୍ଡାୟମାନ କିଶୋର କୁମାର ଗଣେଶ ।)

ପାର୍ବତୀ—ପୁତ୍ର···ପୁତ୍ର ମୋର—ଗଣନାୟକ—ଗଣେଶ !

ଗଣେଶ—ମୋର ପ୍ରଣାମ ଗ୍ରହଣ କର ମାତା !

ପାର୍ବତୀ—ଆଶୀର୍ବାଦ କରୁଚି ବତ୍ସ—ତୁ ସର୍ବଶକ୍ତି ଲଭ କର ।

(ଗୀତ)

ରଙ୍କରତନ ମୋ ଧନ ରେ, ମୋର ଅଙ୍ଗମଣ୍ଡଳ—
ମୋ' ଅଙ୍ଗମଣ୍ଡଳ,
ବାଟେ ତୋତେ ଘାଟେ ପାଇଚି, ଆହା ମୋ ଗଳାମାଳ । ୧ ।
ମାନସପୁତ୍ର, ତୋ' ଜନମ ହରି କୃପାବଳରେ—
ସେ କୃପାବଳରେ,
ମନସାଗର ମୋ' ଉଚ୍ଛୁଳେ, ତୋତେ ଲଭି କୋଳରେ । ୨ ।
ଅଭାଗିନୀ ମୁଁ ଯେ ଦୁଃଖିନୀ, ପତି ମୋ'ଠାରେ କୋପ—
ସେ ମୋ'ଠାରେ କୋପ,
କୋପ ଶାନ୍ତ ପାଇଁ କନ୍ଦରେ ବସି ଆଚରେ ତପ । ୩ ।

ଗଣେଶ—ମତେ ତେବେ ଆଦେଶ କର ମାତା, ମୁଁ କଣ କରିବି ?

ପାର୍ବତୀ— (ଗୀତ)

ଏତିକ ଅଳି ମୋ' ବାବୁରେ ଗୁହାଦ୍ୱାର ଜଗିବୁ—
ତୁ ଦ୍ୱାର ଜଗିବୁ,
ଗୁହା ଭିତରକୁ କାହାକୁ କେବେ ଛାଡ଼ି ନ ଦେବୁ । ୪ ।

ମୋ ତପ ଯେପରି ଭଙ୍ଗ ନ ହୁଏ, ସେଥିପାଇଁ ଏ ଗୁମ୍ଫା-ଦ୍ୱାରରେ ତୁ ପ୍ରହରୀ ରହିବୁ । କାହାରିକୁ ଛାଡ଼ି ଦେବୁ ନାହିଁ । ଏତିକ କରିପାରିବୁ ବାପ ?

ଗଣେଶ— (ଗୀତ)

ଜୀବନ ପଣ ମୁଁ କରୁଚି ତବ ଚରଣ ଛୁଇଁ—
ମୁଁ ଚରଣ ଛୁଇଁ,
ଜନନୀ ଗୋ, ଦିବା-ରଜନୀ ଦ୍ୱାର ଜଗିବି ମୁହିଁ । ୫ ।
ଦେବତା ହେଉ କି ଦାନବ ଯକ୍ଷ ନର କିନ୍ନର—
ସେ ନର କିନ୍ନର,
ଭିତରକୁ ଗୁଡ଼ ନ ଦେବି ଏଇ ଶପଥ ମୋର । ୬ ।

ଏଇ ଯଷ୍ଟି ହାତରେ ମୁଁ ଦ୍ୱାର ଜଗି ରହିଲି । ତୁମେ ନିଶ୍ଚିନ୍ତ ମନରେ ଗୁମ୍ଫା ଭିତରେ ଯାଇ ତପସ୍ୟା କର ।

ପାର୍ବତୀ— ଯଶସ୍ୱୀ ହୁଅ ବତ୍ସ—ଜୟଲାଭ କର ! ମୋର ତପସ୍ୟାର ବେଳ ହୋଇଗଲା—ମୁଁ ଯାଉଚି ।

( ପାର୍ବତୀ ଗୁମ୍ଫା ମଧ୍ୟକୁ ପ୍ରବେଶ କଲେ । ତାଙ୍କ କଣ୍ଠନିଃସୃତ ଶିବ-ସ୍ତୁତିଗାନରେ କୈଳାସ ପର୍ବତ ପର୍ଯ୍ୟନ୍ତ ମୁଖରିତ ହୋଇଉଠିଲା ।)

## ତୃତୀୟ ଦୃଶ୍ୟ

[ କୈଳାସ ପର୍ବତ । କୈଳାସପତି ଧ୍ୟାନମଗ୍ନ । ଏତିକବେଳେ ତାଙ୍କ କର୍ଣ୍ଣରେ ପ୍ରତିଧ୍ୱନିତ ହେଲା ପାର୍ବତୀଙ୍କ ବାଣୀ—

ଓଁ ନମଃ ଶିବାୟ

ଓଁ ନମଃ ଶିବାୟ

ଓଁ ନମଃ ଶିବାୟ ! ]

ଶିବ—କିଏ—କିଏ ମତେ ସ୍ମରଣ କଲା ? କାହାର ତପବଳରେ ମୋର ଧ୍ୟାନ ଭଙ୍ଗ ହେଲା—କିଏ, କିଏ ସେ ?

( ପୁଣି ଶୁଭାଗଲା ପାର୍ବତୀଙ୍କ କଣ୍ଠସ୍ୱର—
ଓଁ ନମଃ ଶିବାୟ ! )

ଶିବ—ପାର୍ବତୀ ! ପାର୍ବତୀ ମତେ ସ୍ମରଣ କରୁଛି । ବହୁକାଳ ହେଲାଣି—ଅଭିମାନ କରି ପାର୍ବତୀ କୈଳାସ ଛାଡ଼ି ଚାଲି ଯାଇଥିଲା । ଏପର୍ଯ୍ୟନ୍ତ ଫେରିନାହିଁ ସେ । କାହିଁ—କୋଉଠି ସେ ? ପାର୍ବତୀ—ପାର୍ବତୀ ! ହେ ଗିରିରାଜ—ହେ ବୃକ୍ଷଲତା, ବନ ଉପବନ—ମତେ କୁହ—ପାର୍ବତୀ ମୋର କାହିଁ ? କ'ଣ ସମସ୍ତେ ନିରୁତ୍ତର ? କେହି ତେବେ ମୋ ପ୍ରଶ୍ନର ଉତ୍ତର ଦେବେ ନାହିଁ ? ଜାଣିନାହାନ୍ତି ମୁଁ ଜଟାଧିଶୂଳଧାରୀ ଧ୍ୱଂସକର୍ତ୍ତା ପ୍ରଳୟକାରୀ ରୁଦ୍ର ! ମୁଁ ଧୂର୍ଜଟୀ—ମୁଁ ପିନାକୀ ! ଆଖିପିଛୁଳାକେ ଏ ତ୍ରିଭୁବନ ମୁଁ ଧ୍ୱଂସ କରିଦେବି ।

( ଧରଣୀବକ୍ଷରେ ଡମ୍ବରୁ ଆଘାତ କଲେ । ସଙ୍ଗେ ସଙ୍ଗେ ଧରଣୀ ଏକ ଧେନୁରୂପରେ ଦେଖାଦେଲେ । )

ଧରଣୀ—ପ୍ରଭୁ !

ଶିବ—କିଏ ? କିଏ ତୁ ବତ୍ସା ?

ଧରଣୀ—ମୁଁ ବସୁନ୍ଧରା-ଧରଣୀ—ଧେନୁରୂପ ଧାରଣ କରି ଆସିଛି ।

ଶିବ—କଣ ତୁ ଚାହୁଁ ?

ଧରଣୀ—ମୁଁ କିଛି ଚାହେଁ ନାହିଁ ଦେବ ! ଆପଣ କ୍ରୋଧଜର୍ଜରିତ ହୋଇ ଡମ୍ବରୁକୁ ଭୂମିରେ ପିଟିବାରୁ ମୋର ବକ୍ଷ ଫାଟିଗଲା ପରି ବୋଧହେଲା । ମୁଁ ଜାଣିପାରୁ ନାହିଁ ସର୍ବନାଥ—ମୋର କି ଦୋଷ ଯୋଗୁଁ ମୋ ପ୍ରତି ଏପରି ଦଣ୍ଡବିଧାନ କଲେ ?

ଶିବ—ତୋର କିଛି ଦୋଷ ନାହିଁ ସତ; କିନ୍ତୁ ମୋ ପାର୍ବତୀ କାହିଁ ?

ଧରଣୀ—ଆପଣ ଦେବୀ ପାର୍ବତୀଙ୍କୁ ଖୋଜୁଛନ୍ତି ?

ଶିବ—ହଁ, ମୋର ପାର୍ବତୀ କାହିଁ ?

( ଗୀତ )

ଶିବ—କହ ଲୋ ଧରଣୀ ମତେ ପାର୍ବତୀ ସମ୍ବାଦ,
ଧରଣୀ—ଗିରିବାଳା ତୁଲେ କିବା ଲାଗିଛି ବିବାଦ ? । ୧ ।
ଶିବ—ବହୁକାଳ ହେଲା ଉମା ତେଜିଛି କୈଳାସ,
ଧରଣୀ—ଏବେ ତୁମ୍ଭ କ୍ରୋଧ ହେତୁ ବୁଝିଲି ମହେଶ । ୨ ।
ଶିବ—ଖୋଜି ଖୋଜି ଅବଶ ମୁଁ ପାଉନି ତାହାରେ,
ଧରଣୀ—ପାଇବେ କିପରି ସେ ତ ଛନ୍ତି ବହୁ ଦୂରେ । ୩ ।

ଶିବ—କେତେ ଦୂର କହ ବତ୍ସା, କେଉଁଠି ସେ ଦେଶ,

ଧରଣୀ—କଳିଙ୍ଗ ଗିରିରେ ତାଙ୍କୁ ଭେଟିବେ ଅବଶ୍ୟ । ୪ ।

ଶିବ—ପ୍ରିୟା ମୋର ଏକାକମ କରୁଥିବ କବା ?

ଧରଣୀ—ଗୁହା ମଧ୍ୟେ ଅହର୍ନିଶ ଧ୍ୟାନରତା ଶିବା । ୫ ।

ଶିବ—ସତ୍ୟ ତେବେ କଳିଙ୍ଗରେ ଭେଟିବି ଶିବାମ ?

ଧରଣୀ—ମିଥ୍ୟା ହେଲେ ଶୂଳମୁନେ ବିନ୍ଧିବେ ମେଦନୀ । ୬ ।

ଧରଣୀ—କଳିଙ୍ଗ ପର୍ବତର ଗୁମ୍ଫା ଭିତରେ ବସି ଦେବୀ ପାର୍ବତୀ ତପ କରୁଛନ୍ତି । ସେଇଠିକି ଗଲେ ତାଙ୍କୁ ଅବଶ୍ୟ ଭେଟିବେ ।

ଶିବ—ବେଶ୍—ତେବେ ମୁଁ ଏଇ ମୁହୂର୍ତ୍ତରେ କଳିଙ୍ଗ ଯାତ୍ରା କରୁଚ ।

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ କଷ୍କିନ୍ଧ୍ୟା ପର୍ବତର ଗୁମ୍ଫାଦ୍ୱାର । ଦ୍ୱାରଦେଶରେ ଯଷ୍ଟି ହସ୍ତରେ ଗଣେଶ ଦଣ୍ଡାୟମାନ ।...ଶିବଙ୍କର ପ୍ରବେଶ । ]

ଶିବ—ଏହି ତ କଷ୍କିନ୍ଧ୍ୟା ପର୍ବତ—ଏହି ସେ ଗୁମ୍ଫା ।...କିନ୍ତୁ ...କିନ୍ତୁ ଗୁମ୍ଫାଦ୍ୱାରରେ ଏ ବାଳକଟି କିଏ ? ସୁନ୍ଦର ବଳିଷ୍ଠ ଶରୀର—ଦେବୋପମ ମୁଖର କାନ୍ତି—ଏହାକୁ ଦେଖିଲାକ୍ଷଣି ମୋ ହୃଦୟରେ ସ୍ପନ୍ଦନ ଜାତ ହେଉଛି କାହିଁକି ? କିଏ ଏହି ? (ଗଣେଶଙ୍କୁ) କିଏ ତୁ ବାଳକ ?

ଗଣେଶ—ଦ୍ୱାରପାଳ ।

ଶିବ—(ହସି) ଏ ସଂସାରରେ ଏଭଳି ନିର୍ବୋଧ କେହି ଅଛି, ଯିଏ ତୋ ପରି କିଶୋର କୁମାରକୁ ଦ୍ୱାରପାଳ ରଖିବ ?

ଗଣେଶ—ସେଥିରେ ତମର ପ୍ରୟୋଜନ ?

ଶିବ—ନା—ପ୍ରୟୋଜନ କିଛି ନାହିଁ; ବରଂ ମୁଁ ସ୍ୱୀକାର କଲି ତୁ ଏଠାକାର ଦ୍ୱାରପାଳ ।...ଆଚ୍ଛା ଦ୍ୱାରପାଳ, ଆଡ଼ ହୋଇଯା, ମୁଁ ଭିତରକୁ ଯିବି ।

ଗଣେଶ—ନା ।

ଶିବ—ନା ! (ହସି) ମୁଁ ଭିତରକୁ ଯାଇପାରିବି ନାହିଁ ?

ଗଣେଶ—ବ୍ରହ୍ମା, ବିଷ୍ଣୁ, ମହେଶ—କାହାରିକୁ ମୁଁ ଛାଡ଼ିବି ନାହିଁ।
ଶିବ—ଏତେ ଶକ୍ତି ?
ଗଣେଶ—ପରୀକ୍ଷା କରିପାର ।
ଶିବ—ମୁହଁଟାଣ ତ କମ୍ ନୁହେଁ ଦେଖୁଚି ।···ମାନିଲି ବାଳକ ! ବ୍ରହ୍ମା ବୃଦ୍ଧ ହେଲେଣି—ବିଷ୍ଣୁ ଅତି ସୁଧାର । ଏମାନେ ଯାଇ ନ ପାରନ୍ତି । କିନ୍ତୁ ମହେଶ—ମହେଶ ନିଶ୍ଚୟ ଯିବେ ।
ଗଣେଶ—(ଜୋରରେ) ନା ।
ଶିବ—ନିର୍ବୋଧ ବାଳକ, ଜାଣୁ ମୁଁ କିଏ ?

(ଗୀତ)

ରେ ନିର୍ବୋଧ ଶିଶୁ ତୋର ଏଡ଼େକ ସାହସ ?
ମୋହ ସାଥେ ପୁଣି ତୁହି କରୁ ପରିହାସ
ଜାଣୁ ମୁହିଁ ଶିବ ରେ,
କଇଳାସପତି ମହାଦେବ ରେ । ୧ ।

ଗଣେଶ— (ଗୀତ)

ଜାଣେନା ମୁଁ କିଏ ଶିବ କେଉଁଠି ତା' ଘର,
ମାତାଙ୍କ ଆଦେଶେ ମୁହିଁ ଜଗିଅଛି ଦ୍ୱାର
ମାତା ଧ୍ୟାନମଗ୍ନ ହେ,
ଯିବାଇ ନ ଦେବି ତହିଁ ବିଘ୍ନ ହେ । ୨ ।

ମାତା ମୋର ଗୁମ୍ଫା ଭିତରେ ତପ କରୁଚନ୍ତି । ଭିତରକୁ ଗଲେ ତପରେ ବିଘ୍ନ ଘଟିବ । ମୁଁ ଏହା କଦାପି କରାଇ ଦେବି ନାହିଁ ।
ଶିବ—(ସ୍ୱଗତ) ଇଏ ପାର୍ବତୀର ପୁତ୍ର ! ଅସମ୍ଭବ ! ମୋ ସହିତ ଇଏ ଛଳନା କରୁଚି । (ଗଣେଶକୁ) ରେ ବାଳକ; ମୁଁ ଶେଷ କଥା ତୋତେ କହୁଚି···ଦ୍ୱାର ଛାଡ଼ିଦେ ।

(ଗୀତ)

ଉଣ୍ଡାମି ତୋ ଶୁଣିବାକୁ ନାହିଁ ମୋର ବେଳ
କାଳସର୍ପ ସଙ୍ଗେ କପା ଖେଳୁଚୁ ତୁ ଖେଳ
ଗୁଡ଼ ଦେ' ତୁ ବାଟ ରେ,
ନ ହେଲେ ଭେଟିବୁ ଜନ୍ମୁବାଟ ରେ । ୩ ।

ଶିବ—ରେ ଶିଶୁ, ବାଟ ଗୁଡ଼ ଦେ କହୁଚି···

ଗଣେଶ—ତମର ନିର୍ଲଜ୍ଜ ପଣ ଦେଖି ଲଜ୍ଜାରେ ମୋ ମୁଣ୍ଡ ତଳକୁ ହୋଇଯାଉଚି ।

ଶିବ—ତେବେ ତୁ ମୋ ସହିତ ଶକ୍ତି ପରୀକ୍ଷା କରିବାକୁ ଚାହୁଁ ?

ଗଣେଶ—ଆଉ କେତେ ଥର ସେ କଥା କହିବି ?

ଶିବ—ବେଶ୍—ଏବେ ତୋ ମୂର୍ଖପଣର ପ୍ରତିଫଳ ଭୋଗ କର ।
(ଶିବ ଓ ଗଣେଶଙ୍କ ଯୁଦ୍ଧ । ଯୁଦ୍ଧରେ ଶିବ ପରାଜିତ)

ଗଣେଶ—(ହସି)······

ଶିବ—କି ଆଶ୍ଚର୍ଯ୍ୟ ! ମୋର ସମସ୍ତ ଶକ୍ତି ପ୍ରୟୋଗ କରି ମୁଁ ତ୍ରିଶୂଳ ଆଘାତ କଲି—କିନ୍ତୁ ପିଲାଟା ସାମାନ୍ୟ ଯଷ୍ଟି-ପ୍ରହାରରେ ମତେ ବାରମ୍ବାର ପରାସ୍ତ କଲା।···ମୁଁ କଣ ଏମିତି ଶକ୍ତିହୀନ ହୋଇପଡ଼ିଚି ! ନା—ବର୍ତ୍ତମାନ ଆଉ ତା ସହିତ ଯୁଦ୍ଧ କରିବି ନାହିଁ । ପୁଣି ପରାସ୍ତ ହେଲେ ଲଜ୍ଜା ଆଉ ଅପମାନର ସୀମା ରହିବ ନାହିଁ । ମୁଁ ଯାଉଚି ମୋର ଅନୁଚର ଶିବଗଣଙ୍କୁ ପଠାଇବି । (ପ୍ରସ୍ଥାନ)

ଗଣେଶ—ଶକ୍ତି ପରୀକ୍ଷା କରୁଥିଲ ପରା—ଚୋରଙ୍କ ପରି ପଳାଇ ଯାଉଚ କାହିଁକି ? ଯାଅ—ଆଉ ଗୁମ୍ଫାଦ୍ୱାର ମାଡ଼ିବୁ ନାହିଁ ।

# ଦ୍ୱିତୀୟ ଦୃଶ୍ୟ

[ ଗଣେଶଙ୍କଦ୍ୱାରା ପରାଜିତ ହୋଇ ଶିବ ଆସି କୈଳାସ କନ୍ଦରରେ ବସିଛନ୍ତି । ସମ୍ମୁଖରେ ନନ୍ଦୀ ଓ ଭୃଙ୍ଗୀ ]

ନନ୍ଦୀ—ଏ ଅସମୟରେ ଆମକୁ ସ୍ମରଣ କଲେ କାହିଁକି ଜଟାଧାରୀ ?

ଶିବ—ଓଃ—କି ଲଜ୍ଜା—କି ଅପମାନ !

ଭୃଙ୍ଗୀ—କଣ ହୋଇଛି ପ୍ରଭୁ ! ରାଗ ଆଉ କ୍ରୋଧରେ ଆପଣଙ୍କ ଚକ୍ଷୁରୁ ଯେପରି ଅଗ୍ନି ସ୍ଫୁରଣ ହେଉଛି !

ଶିବ—ଶୁଣ ମୋର ଅନୁଚର ଶିବଗଣ—ଶୁଣ ନନ୍ଦୀ, ଭୃଙ୍ଗୀ ! କର୍ଷ୍ଣକିଂଧ୍ୟା ପର୍ବତ ଗୁହାଦ୍ୱାର ଜଗିରହିଛି ଗୋଟାଏ ଶିଶୁ—ହାତରେ ତାର ଯଷ୍ଟି । ସେ ମତେ ଗୁହା ଭିତରକୁ ଛାଡ଼ିଲା ନାହିଁ ।

ନନ୍ଦୀ—ଛାଡ଼ିଲା ନାହିଁ ?

ଶିବ—ନା, ଯଷ୍ଟି ପ୍ରହାରରେ ମତେ ପରାସ୍ତ କଲା ।

ଭୃଙ୍ଗୀ—ଅସମ୍ଭବ—ଅସମ୍ଭବ ଏ କଥା !

ଶିବ—ସେଇ ଅପମାନରେ ମୁଁ ସେଠୁ ପଳାଇଆସିଲି ।

ନନ୍ଦୀ—ତେବେ ଚାଲନ୍ତୁ ପିତା—ସେ ଶିଶୁ ନିକଟକୁ ଚାଲନ୍ତୁ—ଆମେ ଦେଖିବୁ ତା'ର କେତେ ଶକ୍ତି !

ଶିବ—ନା, ମୁଁ ଯିବି ନାହିଁ ।

( ଗୀତ )

ଶୁଣ ଶୁଣ ଅନୁଚରେ, ଲାଗେ ବଡ଼ ଭୟ ରେ,
ଛାର ଶିଶୁ ଗୋଟା ମତେ ଦେଲା ପରାଜୟ ରେ ।୦।

ଭୃଙ୍ଗୀ—ଛାର ଗୋଟାଏ ଶିଶୁକୁ ଆପଣ ଭୟ କରୁଛନ୍ତି ?

(ଗୀତ)

ଶିବ—ଗଜାଧକ୍‌କା ଦେଲ୍‌ ମତେ ହସ୍ତିରେ ପିଟିଲ୍‌,
ଗୁହାଦ୍ୱାରୁ ସେ ଅଧମ ଛଳେ ନ ହଟିଲ୍‌ ରେ । ୧ ।

ନନ୍ଦ—ଆମକୁ ତେବେ ଆଦେଶ ଦଅନ୍ତୁ ପ୍ରଭୁ—ତା' ହସ୍ତିସହ ତାକୁ ଏଠିକ ବାନ୍ଧ ଆଣିବୁ ।

ଶିବ—କିନ୍ତୁ ତୁମେମାନେ ଏକା ଯାଅ ନାହିଁ ।

(ଗୀତ)

ଦଳବଳ ନେଇ ସବେ ଗୁମ୍ଫାଦ୍ୱାରେ ଯାଅ ହେ,
ଶିବ ଅପମାନଯୋଗ୍ୟ ପ୍ରତିଶୋଧ ନଅ ହେ···
ଗଦା ଭାଙ୍ଗିବ,
ତା' ଗଦା ଭାଙ୍ଗିବ,
ତାକୁ ଅତଳ ଜଳରେ ଫିଙ୍ଗିବ···
ଗଦା ଭାଙ୍ଗିବ,
ତା' ଗଦା ଭାଙ୍ଗିବ ।
ଶିବଶକ୍ତି ସେ ପାମର ବୁଝିବ···
ଗଦା ଭାଙ୍ଗିବ,
ତା' ଗଦା ଭାଙ୍ଗିବ,
ତେବେ ଯାଇ କ୍ରୋଧ ମମ ବଳସ୍ତୁ ହୋଇବ ହେ । ୨ ।

ନନ୍ଦ—ଆପଣଙ୍କ ଆଜ୍ଞା ଶିରୋଧାର୍ଯ୍ୟ । ଦଳବଳ ନେଇ ଆମେ ଯାଉଛୁ—ଗୁମ୍ଫାଦ୍ୱାର ଆକ୍ରମଣ କରିବୁ । ଜୟ, ଶିବଶକ୍ତିର ଜୟ !

(ଦୁହିଁଙ୍କର ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

[ କନ୍ଦିଗ୍ଧ୍ୟା ଗୁମ୍ଫାର ଅଭ୍ୟନ୍ତର । ପାର୍ବତୀଙ୍କ ନିକଟରେ ଅଛନ୍ତି ତାଙ୍କର ଦୁଇ ସହଚରୀ ଜୟା ଓ ବିଜୟା । ]

ପାର୍ବତୀ—ସଖୀ ଜୟା ବିଜୟା, ଗୁମ୍ଫାଦ୍ୱାରକୁ ଯାଇଥିଲ ତୁମେମାନେ ?

ଜୟା—ଯାଇଥିଲୁ ଠାକୁରାଣୀ !

ପାର୍ବତୀ—କଣ ହୋଇଛି ସେଠି ? ମୋ ପୁଅ ଉପରେ କିଛି ବିପତ୍ତି ପଡ଼ିଲା କି ?

ବିଜୟା—ଗୁମ୍ଫାଦ୍ୱାରରେ ବହୁ ସୈନ୍ୟସାମନ୍ତ ରୁଣ୍ଡ ହେଉଛନ୍ତି ।

ପାର୍ବତୀ—ସୈନ୍ୟସାମନ୍ତ ?

ଜୟା—ଶିବଙ୍କ ଅନୁଚର ସେମାନେ—ପ୍ରମଥଗଣ ।

ପାର୍ବତୀ—ସେମାନେ କାହିଁକି ଆସିଛନ୍ତି ?

ବିଜୟା—ତୁମକୁ ଖୋଜି ଖୋଜି ପ୍ରଥମେ ନିଜେ କୈଳାସପତି ଆସିଲେ । କିନ୍ତୁ ତୁମର ପୁଅ ତାଙ୍କୁ ଗୁମ୍ଫା ଭିତରକୁ ଛାଡ଼ିଲେ ନାହିଁ ।

ପାର୍ବତୀ—ସେଇଠୁ ?

ଜୟା—ଦୁହିଁଙ୍କର ଯୁଦ୍ଧ ହେଲା; ଯୁଦ୍ଧରେ ହାରି ଶିବ ଚାଲିଗଲେ ।

ପାର୍ବତୀ—କଣ କହୁଚୁ ତୁ ? ତାଙ୍କ ସହିତ ଯୁଦ୍ଧରେ ତେବେ ମୋ ପୁଅ ଜୟଲାଭ କରିଛି ?

ବିଜୟା—ହଁ ଦେବୀ ! ଯୁଦ୍ଧରେ ହାରି ଯାଇ ଶିବ ତାଙ୍କ ଅନୁଚର ଶିବଗଣଙ୍କୁ ପଠାଇଛନ୍ତି—ସାଙ୍ଗରେ ନନ୍ଦୀ ଭୃଙ୍ଗୀ ।

ଜୟା—କଣ କହିବୁ ମା—ସେମାନଙ୍କର ଯୋଉ ତେଜ—ଯୋଉ କଳାକଳା ଚାବ...

ଜୟା ବିଜୟା— (ଗୀତ)

କି କହିବୁ ଠାକୁରାଣୀ···
କି କହିବୁ ଠାକୁରାଣୀ···
ନନ୍ଦି-ଭୃଙ୍ଗୀଙ୍କର କି ଠାଣିମାଣି ଯେ···
ସତେ ସରଗ ଯିବେ କି ଜିଣି, ଶିବାନୀ ଗୋ । ୧ ।

ବିଜୟା—ନାଚ କୁଦି ଗଗନ ଫଟେଉଚନ୍ତି ପରା । ଧରିକୁ ସରି ମଣୁଚନ୍ତି ।

ଜୟା ବିଜୟା— (ଗୀତ)

ହସେ କେ ବିକଟ ହସ···
ହସେ କେ ବିକଟ ହସ···
ବାହା ଫୁଟାଇ କେ ମୋଡ଼ୁଚି ନଖ ଯେ
ରବେ ଭାଙ୍ଗି ପଡ଼େ ଦଶ ଦିଶ, ଭବାନୀ ଗୋ । ୨ ।

ପାର୍ବତୀ—ଆଉ ମୋ ପୁତ୍ର ?

ଜୟା ବିଜୟା— (ଗୀତ)

କିଶୋର କୁମାର ବୀର···
କିଶୋର କୁମାର ବୀର···
ଅଟଳ ମେରୁ କି ଟେକିଚି ଶିର ଯେ
ଲଭେ ନ ଛାଡ଼ିବେ ଗୁମ୍ଫାଦ୍ୱାର, ଜନନୀ ଗୋ । ୩ ।

ପାର୍ବତୀ—ମୁଁ ଜାଣେ, ପୁତ୍ର ମୋର ଶପଥ କରିଛି—ଗୁମ୍ଫାଦ୍ୱାର ଛାଡ଼ିବ ନାହିଁ ।

ଜୟା—ସେମାନେ କଣ କହୁଚନ୍ତି ଜାଣି ଦେବୀ ? କହୁଚନ୍ତି—ଆମେ ସବୁ ଶିବପୁତ୍ର, ଆମକୁ ଦ୍ୱାର ଛାଡ଼ ଦେ ।

ପାର୍ବତୀ—ଏ କଥା ଯେବେ ସେମାନେ କହୁଚନ୍ତି, ତେବେ ସଖୀ ଜୟା ବିଜୟା, ତୁମେ ଦୁହେଁ ଯାଅ । ପୁତ୍ରକୁ ମୋର କହିବ ସେପରି ଠିକ୍ ଉତ୍ତର ସେ ସେମାନଙ୍କୁ ଦେବ ।

ବିଜୟା—କି ଉତ୍ତର ସେ ଦେବେ ?

ପାର୍ବତୀ— (ଗୀତ)

ତୁମେ ଯେବେ ଶିବପୁତ୍ର···
ତୁମେ ଯେବେ ଶିବପୁତ୍ର···
ମୁଁ କି ଣ ନୁହେଁ ଶିବାଙ୍କ ପୁତ୍ର ଯେ,
ମୁଁ ଯେ ଏକାକୀ ତୁମେ ବହୁତ । ୪ ।

ପାର୍ବତୀ—ଯାଅ ଜୟା ବିଜୟା—ପୁତ୍ର ମୋର ଏଇ କଥା ସେମାନଙ୍କୁ କହିବ ଯେ, 'ତୁମେ ସବୁ ଶିବଙ୍କ ପୁତ୍ର ହେଲେ ମୁଁ ଶିବାଙ୍କ ପୁତ୍ର । ମୁଁ ତୁମକୁ ଡରିବ ନାହିଁ ।'

ଜୟା—ଯାଉଚୁ ଦେବୀ ! (ଦୁହିଙ୍କର ପ୍ରସ୍ଥାନ)

ପାର୍ବତୀ—ଗୁମ୍ଫାଦ୍ୱାରକୁ ଥରେ ଆସି ଯେତେବେଳେ ଫେରି-ଯାଇଚନ୍ତି—ପୁଣି ଆସିବେ । ମୋର ମନ କହୁଚି, କୈଳାସପତି ପୁଣି ନିଶ୍ଚୟ ଆସିବେ ।

(ଧ୍ୟାନରେ ବସିଲେ)

# ଚତୁର୍ଥ ଦୃଶ୍ୟ

[ କିଷ୍କିନ୍ଧ୍ୟା ପର୍ବତ ଗୁମ୍ଫାଦ୍ୱାର । ଯଷ୍ଟିହାତରେ ଦ୍ୱାର ଜଗି ରହିଛନ୍ତି କୁମାର ଗଣେଶ । ତାଙ୍କୁ ବେଢ଼ି ରହିଛନ୍ତି ନନ୍ଦ, ଭୃଙ୍ଗୀ ଓ ଶିବସେନାଗଣ । ]

ଗଣେଶ— ଶୁଣିଲ ତ ମୁଁ କଣ କହିଲି ? ତୁମେ ସବୁ ଶିବପୁତ୍ର— ମୁଁ ଶିବାପୁତ୍ର । ତୁମେ ଅସଂଖ୍ୟ, ମୁଁ ଏକାକୀ । ଆସ, ଶକ୍ତି ପରୀକ୍ଷା କର ।

ନନ୍ଦ— ତେବେ ତୁ ଭଲରେ ଗୁମ୍ଫାଦ୍ୱାରରୁ ହଟିବୁ ନାହିଁ ?

ଗଣେଶ—ଭଲରେ ନୁହେଁ କି ମନ୍ଦରେ ନୁହେଁ ।

ଭୃଙ୍ଗୀ—ଜାଣୁ ଏହାର ପରିଣାମ କଣ ?

ଗଣେଶ—ମୋର ଜୟ, ତମର ପରାଜୟ ।

ନନ୍ଦ—ତୋ'ର ଏତେ ସାହସ ?

ଭୃଙ୍ଗୀ— ସାମାନ୍ୟ ଛୁଆ ଖଣ୍ଡେ— ତୁ ଶିବଶକ୍ତିର ବିରୁଦ୍ଧାଚରଣ କରୁଛୁ ?

ନନ୍ଦ— ଦେଖୁଚୁ ଏ ଖଡ଼୍ଗ । ଏକ ଆଘାତରେ ତୋ ଗଣ୍ଡି ମୁଣ୍ଡ ଅଲଗା କରିଦେବ ।

ଭୃଙ୍ଗୀ— ଏ ଗଦା ପ୍ରହାରରେ ତୋ ମୁଣ୍ଡ ଫଟାଇ ଛତ୍ରୁ କରିଦେବ ।

ନନ୍ଦ— ଏ ବର୍ଚ୍ଛାମୁନରେ ତୋର ବକ୍ଷ ଭେଦ କରିବ ।

ଭୃଙ୍ଗୀ— ଏ ବଜ୍ରମୁଷ୍ଟିର ଆଘାତରେ ତୋ ମେରୁଦଣ୍ଡ ଖଣ୍ଡ ଖଣ୍ଡ କରିଦେବ ।

ନନ୍ଦ — ଏଇ ପଥରଖଣ୍ଡରେ ତୋତେ ବାନ୍ଧି ଅତଳ ସମୁଦ୍ରରେ ନିକ୍ଷେପ କରିବି ।

ଗଣେଶ — ଶୁଣ ଭାଇ, ଆଉ କଥା ଶୁଣିବାକୁ ମୋତେ ବେଳ ନାହିଁ । ମନ ଅଛି ତ ଶକ୍ତି ପରୀକ୍ଷା କର ।

(ଗୀତ)

ଶିବପୁତ୍ରଗଣ ଏ'କ କର ହେ
ବୃଥା ବାହୁସ୍ଫୋଟ କପାଁ ମାର ହେ । ୧ ।
ତୁମ ବୀରପଣିଆର ଛଟକ
ଖାଲି କଥାରେ ରହିଛି ଅଟକ । ୨ ।
ଶିବାତନୟ ମୁଁ ଏକ ବାଳୁତ
ଶିବପୁତ୍ର ତୁମେ ଅଛ ବହୁତ । ୩ ।
ଅସ୍ତ୍ରଶସ୍ତ୍ର ତୁମ ଅସୁମାର ହେ
ହାତେ ଯଷ୍ଟିଖଣ୍ଡି ମୋର ସାର ହେ । ୪ ।
ଛୁଇଁ ମାତାଙ୍କ ଚରଣକମଳ
ମୁଁ ତ କରିଛି ପ୍ରତିଜ୍ଞା ଅଟଳ । ୫ ।
ଗୁହାଦ୍ୱାର ଜଗିଥିବି ସତତ
ମାତା-ଆଜ୍ଞା ପାଳି ପ୍ରାଣି ଉଦ୍ୟତ । ୬ ।
ଯେବେ ପିତାଙ୍କର ତୁମ ଆଦେଶ
ବଳେ ଗୁମ୍ଫାରେ କରିବ ପ୍ରବେଶ । ୭ ।
ସେଇ ପିତାଙ୍କୁ ସୁମରି ଆସ ହେ
ମୋହ ସଙ୍ଗେ ରଣେ ଦିଅ ଝାସ ହେ । ୮ ।

ନନ୍ଦ — ଦେଖୁଚ ଭୃଙ୍ଗୀ, ଟୋକା ଖଣ୍ଡକ କେମିତ ବଡ଼ି ବଡ଼ି କଥା କହୁଚ !

ଭୃଙ୍ଗୀ — ଯମପୁରରୁ ତାକୁ ଡାକରା ଆସିଲାଣି । ଆସ ଭାଇମାନେ, ସମସ୍ତେ ଏକ ସଙ୍ଗେ ତାକୁ ଆକ୍ରମଣ କର ।···ଜୟ, ଶିବ-ଶକ୍ତିର ଜୟ !

ଗଣେଶ — ଜୟ, ମାତୃଶକ୍ତିର ଜୟ !

( ଯୁଦ୍ଧ । ନନ୍ଦ ଭୃଙ୍ଗୀଙ୍କ ସହିତ ସୈନ୍ୟଗଣଙ୍କ ପରାଜୟ ଓ ପଳାୟନ ।)

# ପଞ୍ଚମ ଦୃଶ୍ୟ

[ ଗୁମ୍ଫାର ଅଭ୍ୟନ୍ତର । ଆନନ୍ଦରେ ଅଧୀର ହୋଇ ଜୟା ବିଜୟା ଆସିଲେ । ]

ଜୟା – ଠାକୁରାଣୀ···ଠାକୁରାଣୀ··

ପାର୍ବତୀ – କଣ ସମ୍ବାଦ ଜୟା ବିଜୟା ?

ବିଜୟା – ପଳେଇଗଲେ !

ପାର୍ବତୀ – କଏ ପଳେଇଗଲେ ?

ଜୟା – ସେଇଗୁଡ଼ାକ ମ – ଯିଏ ଆମ କୁମାରଙ୍କ ସାଙ୍ଗରେ ଲଢ଼େଇ କରିବାକୁ ଆସିଥିଲେ ।

ବିଜୟା – ଯେତକ ତ ମଲେ, ମଲେ; ଆଉ ଯେତକ ଗୋଡ଼ହାତ ଭାଙ୍ଗିଲେ – ଆଉ ଯିଏ ବଞ୍ଚିଲେ, ପଳେଇଗଲେ ।

ଜୟା – ଯେମିତି କଳକଳା ରାବ କରି ଆସିଥିଲେ, ସେମିତି କଳବଳ ହୋଇ ପ-ପଳେଇଗଲେ ।

ପାର୍ବତୀ – ପୁଅ ମୋର ଯୁଦ୍ଧରେ ଜିତିଛି । ଏଇ ନିଅ ଜୟା ବିଜୟା— ତୁମ ପୁରସ୍କାର । (ମାଳା ପ୍ରଦାନ କଲେ)

ଜୟା ବିଜୟା – ଦେବୀଙ୍କ ମନକାମନା ପୂର୍ଣ୍ଣ ହେଉ ।

# ଷଷ୍ଠ ଦୃଶ୍ୟ

[ କୈଳାସ—ଉପସ୍ଥିତ ଶିବ ଓ ନନ୍ଦ ଭୃଙ୍ଗୀ ]

ଶିବ—ଏତକ ନିର୍ଲଜ୍ଜ ତୁମେମାନେ—ଏମିତି ଭୀରୁ, କାପୁରୁଷ ! ସାମାନ୍ୟ ଗୋଟାଏ ବାଳକ ପାଖରେ ପରାସ୍ତ ହୋଇ ମୋ ପାଖକୁ ଆସିଚ !! କାହିଁକି ? କାହିଁକି ଆଉ ଏଠିକି ଆସିଲ ? ସେଇ ଯୁଦ୍ଧକ୍ଷେତ୍ରରେ ନିଜ ଅସ୍ତ୍ର ନିଜ ଛାତିରେ ଭୁଷି ଆତ୍ମହତ୍ୟା କରି ମଲ ନାହିଁ କାହିଁକି ?

ନନ୍ଦ—ଆମର କିଛି ଉପାୟ ନଥିଲା ପ୍ରଭୁ ! ଆମେ ଶିବଗଣ ଏକ ସଙ୍ଗରେ ତାକୁ ଆକ୍ରମଣ କଲୁ । କିନ୍ତୁ ପଥରଦେହରେ ମାଟି-ପିଣ୍ଡୁଳା ବାଜିଲା ପରି ଆମ ଦଶା ହେଲା ।

ଭୃଙ୍ଗୀ—ଆମେ ଦୁହେଁ—ନନ୍ଦ ଭୃଙ୍ଗୀ—ତା' ସହିତ ମଲ୍ଲଯୁଦ୍ଧ କଲୁ । ମୁଁ ତା' ଡାହାଣ ଜାନୁକୁ ଟାଣିଲି ।

ନନ୍ଦ—ମୁଁ ଟାଣିଲି ବାମ ଜାନୁ ।

ଭୃଙ୍ଗୀ—କିନ୍ତୁ ସେ ଅଟ୍ଟହାସ କରି ଆମକୁ ଏମିତି ଧକ୍କା ମାରିଲା ଯେ ଆମେ ଦୁହେଁ ଶହେ ହାତ ଦୂରରେ ପଡ଼ିଲୁ ।

ନନ୍ଦ—ସିଏ ଶିଶୁ ନୁହେଁ—କାଳାନ୍ତକ ଯମ ! ପଳାଇ ଆସି ନ ଥିଲେ, ଶିବଗଣ ସେଠି ପ୍ରାଣ ହରାଇଥାନ୍ତେ ।

ଶିବ—ଭଲ ହୋଇଥାନ୍ତା—ଖୁବ୍ ଭଲ ହୋଇଥାନ୍ତା ! ତମମାନଙ୍କର ଏ ନିର୍ଲଜ୍ଜ ମୁହଁ ଆଉ ମୁଁ ଦେଖି ନ ଥା'ନ୍ତି ।

( ଗୀତ )

ଆରେ ଶିବଗଣ ଏତେ ତୁମେ ହୀନ
(ତୁମ) ଶିବଶକ୍ତି ଗଲା କାହିଁ ?
ଘୃର ଶିଶୁ ଗୋଟା କଲା ହଟହଟା
ଜବାବ ମିଳାଇ ନାହିଁ ? । ୦ ।

ଯୁଦ୍ଧଭୂଇଁରୁ ପଳାଇଆସିବା ଆଗରୁ ବିଷ ଜହର ଖାଇ ମଲ ନାହିଁ କାହିଁକ ?

ନନ୍ଦ—ଆପଣ ଆମକୁ ବୃଥା ଲାଞ୍ଛନା ଦେଉଚନ୍ତି ପିତା !

ଭୃଙ୍ଗୀ—ଆମେ ଦୁଇ ଭାଇ ଆମ କର୍ତ୍ତବ୍ୟରେ ଅବହେଳା କରିନାହୁଁ ।

ଶିବ—କରିନାହଁ ?

( ଗୀତ )

ଦଣ୍ଡାପର ତୁମେ ଭେଣ୍ଡା ଦୁଇଭାଇ
ହୁଣ୍ଡାପରି କଥାଁ ଆସିଲ ପଳାଇ,
ମେଣ୍ଢାପଲ ପରି ଦଉଡ଼ିଲ ତମକୁ
ଶିଶୁଟୋଗୋଟା ଥିଲା କାହିଁ । ୧ ।

ନନ୍ଦ—ସେ ଶିଶୁକୁ ଯୁଦ୍ଧରେ ଜିତିବା ଅସମ୍ଭବ ପ୍ରଭୁ !

ଭୃଙ୍ଗୀ—ତା ପାଖରେ ଶରଣ ପଶିଲେ ସେ ଗୁମ୍ଫାଦ୍ୱାର ଛାଡ଼ିଦବ ।

ଶିବ—କଣ କହିଲୁ ଭୃଙ୍ଗୀ—ମୁଁ ତା' ପାଖରେ ଶରଣ ପଶିବି ?

(ଗୀତ)

ଆରେ ନନ୍ଦ, ଭୃଙ୍ଗୀ ହେଲ କି ପାଗଳ
ଚନ୍ଦ୍ରଚୂଡ଼ କଣ ଏଡ଼େ ହୀନବଳ
ଶାର୍ଦ୍ଦୂଳ କି କେବେ ଶୃଗାଳ ଚରଣେ
ଶରଣ ପଶିଛି ଯାଇ । ୨ ।

ଶିବ—ପାର୍ବତୀ ମୋର ସ୍ତ୍ରୀ । ସାମାନ୍ୟ ଗୋଟାଏ ନାରୀ—ତାକୁ ସନ୍ତୁଷ୍ଟ କରିବା ପାଇଁ ତା'ର ଭୃତ୍ୟ ଗୋଟାଏ ଶିଶୁ ପାଖରେ ମୁଁ ଶରଣ ପଶିବି ! କେବେ ନୁହେଁ ! ତାକୁ ଉପଯୁକ୍ତ ଶିକ୍ଷା ନ ଦବାଯାଏ ମୋ ମନରେ ଶାନ୍ତି ନାହିଁ । ତୁମେମାନେ ବର୍ତ୍ତମାନ ମୋ ସମ୍ମୁଖରୁ ଯାଅ—ଯାଅ ସମସ୍ତେ !

(ନତମସ୍ତକରେ ନନ୍ଦୀ ଭୃଙ୍ଗୀଙ୍କର ପ୍ରସ୍ଥାନ)

## ସପ୍ତମ ଦୃଶ୍ୟ

[ କିଷ୍କିନ୍ଧ୍ୟା ଗୁମ୍ଫା ଅଭ୍ୟନ୍ତର ]

ଜୟା—ତୁମ ପୁଅ ତ ଯୁଦ୍ଧରେ ଜିଣିଲା—ତୁମେ ମନ ଦୁଃଖ କରି ବସିଚ କାହିଁକି ଠାକୁରାଣୀ ?

ବିଜୟା—ଆଉ ପୁଣି କଣ ଭାବୁଚ ଦେବୀ ?

ପାର୍ବତୀ—ଶିବଙ୍କ କୋପ କଥା କିଏ ନଜାଣେ ? ସେ ଯେବେ କୋପ କରିବେ, ତ୍ରିଭୁବନ ଧ୍ୱଂସ ହୋଇଯିବ । ତାଙ୍କ ଅନୁଚରମାନେ ହାରିଗଲେ ବୋଲି, ଯଦି ସେ ମୋ ପୁତ୍ର ଉପରେ ପ୍ରତିଶୋଧ ନେବେ—

( ପ୍ରବେଶ କଲେ ନାରଦ )

ନାରଦ—ନାରାୟଣ, ନାରାୟଣ !

ଜୟା—ନାରଦ ମୁନି ଆସିଲେଣି !

ପାର୍ବତୀ—ପ୍ରଣାମ ଦେବର୍ଷି !

(ଗୀତ)

ନାରଦ—

ଉମାରାଣୀ ଦେବୀ ଭବାନୀ
କାହିଁକି ଭଲ ଏ ବିରସ ମୁହଁ ? । ପଦ ।
ଯିଏ ସ୍ୱୟଂ ଜଗତମାତା
ପୁଅ ଯାର ଜଗତଜିତା,
ସ୍ୱାମୀ ଯାର ଦେବଦେବ ମହାଦେବ
ସେ କିଆଁ ଢାଳିବ ଆଖିର ଲୁହ । ୧ ।

ନାରଦ—ବହୁ ଦିନ ପରେ ଦେବୀଙ୍କ ଦର୍ଶନ ପାଇଲି । କିନ୍ତୁ, ଉମାରାଣୀଙ୍କର ଏ ବିରସ ମୁହଁ କାହିଁକି ?

ପାର୍ବତୀ—ଦେବର୍ଷିଙ୍କୁ କେଉଁ କଥା ଅଜଣା ? ଯୁଦ୍ଧରେ ହାରିଯାଇ ଶିବ କୋପମୂର୍ତ୍ତି ଧାରଣ କରିଥିବେ ।

ନାରଦ—ଏଥିରେ ଆଉ ସନ୍ଦେହ କିଛି ଅଛି ?

ପାର୍ବତୀ—ତା' ହେଲେ ତାଙ୍କ କୋପରୁ ମୋ ପୁଅ କିପରି ରକ୍ଷା ପାଇବ ମହାମୁନି ?

ନାରଦ—ସେ କଥା ଅବଶ୍ୟ ଚିନ୍ତା କରିବା କଥା । ରୁଦ୍ରଙ୍କ କୋପ—ସ୍ୱୟଂ ନାରାୟଣ ମଧ୍ୟ ପ୍ରମାଦ ଗଣନ୍ତି ।

ପାର୍ବତୀ—କୁହନ୍ତୁ ମୁନିରାଜ, ମୁଁ କି ଉପାୟ କରିବ ?

( ଗୀତ )

ନାରଦ—

ଆଦ୍ୟାଶକ୍ତି ହେ ମହାମାୟା
ଉପହାସ କରୁଛ କିଆଁ,
ଶକ୍ତିର ଅଭାବ ଅଛି କିବା ତବ
ମୁହିଁ କି ଉପାୟ କହିବ କୁହ ? । ୨ ।

ପାର୍ବତୀ—ତେବେ ମୋର ଶକ୍ତି ମୁଁ ପ୍ରୟୋଗ କରିବ ?

ନାରଦ—ନିଶ୍ଚୟ ! ମା' ହୋଇ ନିଜ ପୁଅକୁ ରକ୍ଷା ନ କଲେ ଆଉ ରକ୍ଷା କରିବ କିଏ ?

ପାର୍ବତୀ—ତେବେ, ତେବେ ଦେଖନ୍ତୁ ମହାମୁନି—ଆପଣଙ୍କ ସମ୍ମୁଖରେ ମୁଁ ଦୁଇ ଶକ୍ତି ସୃଷ୍ଟି କରୁଛି ।

(ପାର୍ବତୀଙ୍କ ମୁଖମଣ୍ଡଳ ତେଜୋଦୀପ୍ତ ହୋଇଉଠିଲା—ଚକ୍ଷୁରୁ ସ୍ଫୁଲିଙ୍ଗ ଛୁଟିଲା । ଶୂନ୍ୟରେ ମହାଶବ୍ଦ ଶୁଣାଗଲା । )

ପାର୍ବତୀ—ପ୍ରଥମ ଶକ୍ତିର ନାମ ମହାମୁଖା—ଦ୍ୱିତୀୟ ଶକ୍ତିର ନାମ ଅସଂଖ୍ୟ ବାହୁଶାଳିନୀ । ବଜ୍ରଠାରୁ ବଳ ଅଧିକ ଗତି । କୋଟିସୂର୍ଯ୍ୟଠାରୁ ବଳ ଅଧିକ ତେଜ । ମୋର ଏହି ଦୁଇ ମହାଶକ୍ତିକୁ ମୁଁ ମୋର ପୁତ୍ର ଗଣେଶକୁ ଦାନ କଲି । ଆଉ ତା'ର ଶିବକୋପକୁ ଭୟ ନାହିଁ ।

ନାରଦ—ନାରାୟଣ, ନାରାୟଣ ! ମତେ ବର୍ତ୍ତମାନ ବିଦାୟ ଦିଅନ୍ତୁ ।

(ପ୍ରସ୍ଥାନ)

# ଅଷ୍ଟମ ଦୃଶ୍ୟ

[ କୈଳାସ ପର୍ବତ—ନନ୍ଦି, ଭୃଙ୍ଗୀ ଓ ଶିବ ]

ନନ୍ଦି—ଆଉ କେତେବେଳ ଏମିତି ମନ ଦୁଃଖ କରି ବସିବେ ପିତା ? କିଛି ହେଲେ ଉପାୟ ଚିନ୍ତା କରନ୍ତୁ । (ନାରଦଙ୍କ ପ୍ରବେଶ)

ନାରଦ—ନାରାୟଣ···ନାରାୟଣ···

ଭୃଙ୍ଗୀ—ଏଇ, ନାରଦ ମୁନି ଆସିଲେଣି ।

ନାରଦ—କୈଳାସପତିଙ୍କର ଜୟ ହେଉ !

ଶିବ—ଆସନ୍ତୁ ଦେବର୍ଷେ, ଆସନ ଗ୍ରହଣ କରନ୍ତୁ ।

(ଗୀତ)

ନାରଦ—ଉମାପତି ହେ ମହାପତି,
କାହିଁକି ଭଲ ଏ ବିରସ ମୁହଁ ?
କହଁ ଅବସାଦ ମନେ କହଁ ଖେଦ
କହଁଇଁ ପରାଣେ ଜାଗିଛି କୋହ । ୧ ।

ଶିବ—ଦେବର୍ଷିଙ୍କୁ କୋଉ କଥା ଅଜଣା ଅଛି ? ସାମାନ୍ୟ ଗୋଟାଏ ଶିଶୁ ନିକଟରେ ଶିବଶକ୍ତି ଆଜି ପରାଜିତ !

ନାରଦ—ଅବଶ୍ୟ··ଅବଶ୍ୟ । ଏ ଅପମାନଠୁ ଆଉ ଅପମାନ ନାହିଁ । ଏଭଳି ଅପମାନ ରୁଦ୍ରଦେବ ଆଉ କେବେ କୋଉଠି ପାଇ ନଥିବେ । ଏଥରକି, ଦକ୍ଷଯଜ୍ଞର ଅପମାନକୁ ଏ ଅପମାନ ବଳିଯାଇଛି ।

ଶିବ—କିନ୍ତୁ ଦେବର୍ଷି ! ଏ ଅପମାନର ପ୍ରତିଶୋଧ ନବାକୁ ଯେତେବେଳେ ମୋର ରୁଦ୍ରକୋପ ପ୍ରକାଶ ପାଇବ—ହାତର ଡମ୍ବରୁ କମ୍ପି ଉଠିବ – ତ୍ରିଶୂଳରୁ ଅଗ୍ନି ବର୍ଷଣ ହେବ— ତ୍ରିଲୋଚନ ପ୍ରଜ୍ୱଳିତ ହେବ—ଜଟାଜୂଟ ପିଙ୍ଗଳବର୍ଣ୍ଣ ଧାରଣ କରିବ···

ନାରଦ—କିଛି ଲାଭ ହେବ ନାହିଁ ଭୋଳାନାଥ ! ସେ ଶିଶୁ ବର୍ତ୍ତମାନ ମହାମୁଖୀ ଓ ଅସଂଖ୍ୟ ବାହୁଶାଳିନୀ—ଏ ଦୁଇ ମହାଶକ୍ତିର ଅଧିକାରୀ । ରୁଦ୍ରକୋପ ତା'ର କେଶ ସୁଦ୍ଧା ସ୍ପର୍ଶ କରି ପାରିବ ନାହିଁ ।

ଶିବ—କିଏ—କିଏ ଦେଲା ତାକୁ ଏ ମହାଶକ୍ତି ? ପାର୍ବତୀ ?

ନାରଦ—ଆଉ କିଏ ? ନାରୀ ବୋଲି କଣ ତାଙ୍କର ମାନ-ଅପମାନ ଜ୍ଞାନ ନାହିଁ ?

ଶିବ—ତା'ହେଲେ କୁହନ୍ତୁ ମୁନି – ମୁଁ କି ଉପାୟ କରିବି ?

ନାରଦ—ଉପାୟ—ଉପାୟ ହେଉଛନ୍ତି ଗୋଲୋକବିହାରୀ ବିଷ୍ଣୁ ।

ଶିବ—ବିଷ୍ଣୁ ତେବେ ଉପାୟ ବତାଇଦେବେ ?

ନାରଦ—ହଁ, ସେହି ମାୟାବୀ ବିଷ୍ଣୁ ସବୁ ଉପାୟ ବତାଇଦେବେ ।

(ଗୀତ)

ବିଷ୍ଣୁ ଯେବେ ହେବେ ସହାୟ
ଆଉ କିଛି ନ ଥିବ ଭୟ
ସହି ଅପମାନ ଦେବ ତ୍ରିଲୋଚନ
ନୀରବେ ରହିବା ଉଚିତ ନୁହଁ । ୨ ।

ଶିବ—ମୁଁ ତେବେ ବିଷ୍ଣୁଙ୍କୁ ସ୍ମରଣ କରୁଛି ।

ନାରଦ—ଏଇ ସାଙ୍ଗେ ସାଙ୍ଗେ । ଆଉ କେତେ କାଳ ଅପମାନ ସହ୍ୟ କରି ବସିବେ ? ···ହଉ, ମତେ ଏବେ ବିଦାୟ ଦିଅନ୍ତୁ । ନାରାୟଣ···ନାରାୟଣ······ (ପ୍ରସ୍ଥାନ)

(ଶିବ ଧ୍ୟାନମଗ୍ନ ହେଲେ । ଅଳ୍ପ ସମୟ ପରେ ବିଷ୍ଣୁଙ୍କର ଆବିର୍ଭାବ ହେଲା ।)

ଶିବ—ଆସନ୍ତୁ ଗୋଲୋକବିହାରୀ—ଆସନ ଗ୍ରହଣ କରନ୍ତୁ ।

ବିଷ୍ଣୁ—କୁହନ୍ତୁ, କାହିଁକି ଏ ଅସମୟରେ ସ୍ମରଣ କଲେ ?

ଶିବ—ମତେ ଏ ବିପଦରୁ ରକ୍ଷା କରନ୍ତୁ ଦେବ ! ସାମାନ୍ୟ ଗୋଟାଏ ବାଳକ ମତେ ଯୋଉ ଅପମାନ ଦେଇଛି, ତାହା ସମସ୍ତ ଦେବତାକୁଳଙ୍କୁ ଅପମାନ ।

ବିଷ୍ଣୁ—ସ୍ୱୀକାର କରୁଛି – ଦେବକୁଳ ଏଥିରେ ଅପମାନିତ ହୋଇଛନ୍ତି । କିନ୍ତୁ ଆପଣ ସେ ବାଳକକୁ ସାମାନ୍ୟ ମନେ କରୁଛନ୍ତି କାହିଁକି ?

ଶିବ—ତାହେଲେ ଗୋଟାଏ ଅବୋଧ ଶିଶୁ ମତେ ଅପମାନ ଦେବ—ଆଉ ଆପଣ ଦେବକୁଳର ରକ୍ଷକ ହୋଇ ମହାନନ୍ଦରେ କ୍ଷୀରସାଗରରେ ନିଦ୍ରା ଯିବେ !!

ବିଷ୍ଣୁ—ମୁଁ କହିଲି ଏ କଥା ? ଆପଣ କଥାକଥାକେ ରାଗିଯିବେ—ଆଉ ଅନ୍ୟମାନଙ୍କୁ ଦୋଷ ଦେବେ । ···କିଛି କୁଆଡ଼ୁ ନଥିବ ହଠାତ୍ ଏମିତି ଗୋଟିଏ ପରିସ୍ଥିତି ସୃଷ୍ଟି କରିବେ, ଯୋଉଥିରେ ଆପଣ ନିଜେ ଅସୁବିଧା ଭୋଗିବେ—ଅନ୍ୟମାନଙ୍କୁ ମଧ୍ୟ ଅସୁବିଧାରେ ପକେଇବେ ।

ଶିବ—ଆପଣ କଣ ମତେ ଏଇ ସବୁ ଦୋଷ ଦେବାକୁ ଏଠିକି ଆସିଛନ୍ତି ? ଏଇଥିପାଇଁ ମୁଁ ଆପଣଙ୍କୁ ସ୍ମରଣ କଲି ?

ବସ୍ତୁ—କ ଦରକାର ଥିଲ ଭୃଗୁ ଋଷିଙ୍କ ସ୍ତ୍ରୀକୁ ହତ୍ୟା କରିବାକୁ ଯିବା ? ପୁଣି ଦେବୀ ପାର୍ବତୀଙ୍କ ଭଳି ସ୍ତ୍ରୀକୁ ଘରୁ ତଡ଼ି-ଦେଉଥିଲେ ବା କାହିଁକି ?

ଶିବ—ସିଏ ତ ମୋ' ନିଜ ଘରକଥା । ଘର କରି କଣ ସ୍ୱାମୀ ସ୍ତ୍ରୀ ମଧ୍ୟରେ କଳିକଜିଆ ହୁଏ ନାହିଁ ?

ବସ୍ତୁ—କିନ୍ତୁ ସେଇ ଘରକଳିରୁ ତ ସାରା ସଂସାର ପ୍ରମାଦ ଗଣିଲାଣି ।

ଶିବ—ସେଇଥି ପାଇଁ ତ ଆପଣଙ୍କୁ ସ୍ମରଣ କରିଛି—ସଂସାରକୁ ରକ୍ଷା କରନ୍ତୁ···ମତେ ଅପମାନରୁ ବଞ୍ଚାନ୍ତୁ ।

ବସ୍ତୁ—ଆପଣ ଗଣନାଥ ବିରୁଦ୍ଧରେ ପୁଣି ଯୁଦ୍ଧଯାତ୍ରା କରନ୍ତୁ ।

ଶିବ—ପୁଣି ଯୁଦ୍ଧଯାତ୍ରା କରିବି···ପୁଣି ଅପମାନ ଭୋଗିବି ? ଜାଣନ୍ତି ସେ ଶିଶୁ ହୁଇ ମହାଶକ୍ତିର ଅଧିକାରୀ ? ଆପଣ ମତେ ଏଇ ଉପଦେଶ ଦେଉଛନ୍ତି ?

ବସ୍ତୁ—ଶୁଣନ୍ତୁ, ମୋ କଥା ଆଗେ ଶୁଣନ୍ତୁ । ଆପଣ ଯୁଦ୍ଧ କରନ୍ତୁ । ତ୍ରିଶୂଳ ପ୍ରୟୋଗ କଲାବେଳେ, ମୁଁ ମାୟା ବିସ୍ତାର କରିବି—ତା'ର ଶକ୍ତି ଅଚଳ ହୋଇପଡ଼ିବ । ତ୍ରିଶୂଳରେ ତା'ର ଶିରଚ୍ଛେଦ ହେବ ।

ଶିବ—କମଳାପତି ବିଷ୍ଣୁଙ୍କର ଜୟ ହେଉ ! ଯାଅ ନନ୍ଦୀ ଭୃଙ୍ଗୀ—ଯୁଦ୍ଧଯାତ୍ରା ପାଇଁ ଆଦେଶ ଦିଅ ।

# ନବମ ଦୃଶ୍ୟ

[ ଗୁମ୍ଫାଦ୍ୱାର—ଏକପଟରେ ଗଣେଶ ଓ ଅନ୍ୟ ପଟରେ ଶିବ, ବିଷ୍ଣୁ ଓ ଅନ୍ୟମାନେ । ]

ଶିବ—ରେ ମୂର୍ଖ ଶିଶୁ—ବର୍ତ୍ତମାନ ଶେଷ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ରହ ।

ଗଣେଶ—ମୁଁ ତ ଆରମ୍ଭରୁ ପ୍ରସ୍ତୁତ ରହିଚି । ତୁମେ ସିନା ଥରକୁ ଥର ଯୁଦ୍ଧକ୍ଷେତ୍ର ଛାଡ଼ି ପଳଉଚ ।

ଶିବ—ଗୁମ୍ଫାଦ୍ୱାର ଛାଡ଼ିବୁ ନା ନାହିଁ ?

ଗଣେଶ—ମୋ' ମାତାଙ୍କ ପାଖରେ ଶରଣ ପଶିଲେ ଛାଡ଼ିଦେବି ।

ଶିବ—ଏଡ଼େ ଗର୍ବ ?

ଗଣେଶ—ଗର୍ବ ନୁହେଁ—କର୍ତ୍ତବ୍ୟ ।

ଶିବ—ଦେଖୁଚନ୍ତି ତ ବିଷ୍ଣୁ ତା'ର ତେଜ ଆଉ ଶକ୍ତି !

ବିଷ୍ଣୁ—ଆପଣ ପ୍ରସ୍ତୁତ ରହନ୍ତୁ—ମୁଁ ମାୟା ବିସ୍ତାର କଲି ।

( ବିଷ୍ଣୁ ଚକ୍ର ଉତ୍ତୋଳନ କଲେ । ଶୂନ୍ୟରୁ ମହାଶବ୍ଦର ସୃଷ୍ଟି ହୋଇ କର୍ଷିନ୍ଧ୍ୟା ଗିରିଗୁହା ପ୍ରକମ୍ପିତ ହେଲା । ଦେଖାଗଲା କୁମାର ଗଣେଶ ଧୀରେ ଧୀରେ ଶକ୍ତିହୀନ ହୋଇପଡ଼ୁଚନ୍ତି । )

( ଗୀତ )

ଶିବ—ରେ ନବୋଧ ଶିଶୁ, ସ୍ମର ତୋ'ର ଇଷ୍ଟନାମ
ଗଣେଶ—ଜାଣେନା ମୁଁ କିଏ ଇଷ୍ଟ କାହିଁ ତା'ର ଧାମ ।

ଶିବ—ତୋ'ର ମୂଢ଼ପଣିଆର ଭୋଗ ପ୍ରତିଫଳ
ଗଣେଶ—ବୁଝି ପାରୁନାହିଁ କପାଁ ହୁଏ ହୀନବଳ ।
ଶିବ—ଏଇ ଦେଖ ତ୍ରିଶୂଳ ମୁଁ କରିଲି ପ୍ରହାର
ଗଣେଶ—କାହିଁ ଅଛ ମାତା ତବ ପାଦେ ନମସ୍କାର···ଆଃ···

(ଶିବଙ୍କ ତ୍ରିଶୂଳ ପ୍ରହାରରେ ଗଣେଶଙ୍କର ମୃତ୍ୟୁ ହେଲା ।)

ନନ୍ଦି—ଏକାବେଳକେ ଗଣ୍ଡି ମୁଣ୍ଡ ଦୁ'ଖଣ୍ଡ ହୋଇଯାଇଛି ।
ଶିବ—ତା'ର ଉପଯୁକ୍ତ ପ୍ରତିଫଳ ସେ ପାଇଛି—ମୁଁ ଯାଏ, ଏବେ
ଗୁମ୍ଫା ମଧ୍ୟରେ ପ୍ରବେଶ କରେ ।

## ଦଶମ ଦୃଶ୍ୟ

[ଗୁମ୍ଫାର ଅଭ୍ୟନ୍ତର—ଶିବଙ୍କର ଆଗମନ । ]

ଶିବ – ପାର୍ବତୀ, ପାର୍ବତୀ· · ·କାହିଁଗଲ ପାର୍ବତୀ ?

ପାର୍ବତୀ—ତୁମେ ଆସିଛ ପ୍ରଭୁ ! ଏ ଦୀନାର ତପସ୍ୟା ତେବେ ସଫଳ ହୋଇଛି ? ଆସନ ଗ୍ରହଣ କର ଦେବ ! ଆଗେ ପାଦପୂଜା କରେ ।

ଶିବ—ପାର୍ବତୀ !

ପାର୍ବତୀ – ଗୁମ୍ଫାଦ୍ୱାରରେ ଶିଶୁ ପ୍ରହରୀ ଥିଲା—ତୁମେ ଆସିଲ କେମିତି ?

ଶିବ—ତୁମେ ଜାଣିନାହଁ ଗୌରୀ – ସେଇ ଶିଶୁ ପାଇଁ ଖଣ୍ଡ ପ୍ରଳୟ ହୋଇଗଲାଣି । ଗୁମ୍ଫା ଭିତରକୁ ମତେ ଛାଡ଼ିଲା ନାହିଁ । ଶେଷକୁ ତା’ ସହିତ ଯୁଦ୍ଧ କରି ତାକୁ ବଧ କରି ଆସିଲି ।

ପାର୍ବତୀ— କଣ, କଣ କହିଲ ପ୍ରଭୁ—ତାକୁ ତୁମେ ବଧ କରିଛ ! ମୋ’ ଗଣନାଥ ଆଉ ନାହିଁ ?

(ଗୀତ)

ଏଡ଼େକ ନୃଶଂସ ପ୍ରଭୁ ଏ କି କର୍ମ କଲ,
ନିଜ ହାତେ ମୋ ସନ୍ତାନ ପରାଣକୁ ନେଲ,
ସଂସାରେ
କି ଯଶ ପାଇଲ । ୧ ।

ଶିବ—ସେ…ସେ ତୁମର ସନ୍ତାନ ?

(ଗୀତ)

ପାର୍ବତୀ—ମୋ ଅଙ୍ଗ କୁଙ୍କୁମ-ରାଗ-ମଳୁଖରୁ ଜାତ
ଜୀବନ୍ୟାସ ଦେଲେ ହର ନାମ ଗଣନାଥ,
ସ୍ୱାମୀ ହେ,
ତୁମେ ତା'ର ତାତ । ୨ ।

ଶିବ—ଏ ସବୁ କଣ ତୁମେ କହୁଚ ପାର୍ବତୀ ?

(ଗୀତ)

ପାର୍ବତୀ—କାହିଁ ଗଲା ଧନ ମୋର ରକ୍ତୁଣୀରତନ
ମାତା ଲାଗି ବାଳ ଶିଶୁ ଦେଲା ତା' ଜୀବନ,
ବିଧାତା,
ଧିକ ଏ ଜୀବନ । ୩ ।

ଶିବ—ତୁମେ ବିଶ୍ୱାସ କର ପାର୍ବତୀ, ଏସବୁ କଥା ମୁଁ କିଛି ଜାଣେ ନାହିଁ ।

(ଗୀତ)

ପାର୍ବତୀ—ଯେଉଁ ହାତେ ଛେଦ କଲ ମୋ ପୁତ୍ରର ଶିର
ସେଇ ହାତେ ବୁକୁରେ ମୋ' ଶୂଳ ଭେଦ କର,
ଏତିକ,
ମାଗୁଣି ମୋହର । ୪ ।

ହାତରେ ତୁମର ତ୍ରିଶୂଳ ଅଛି ପ୍ରଭୁ, ମତେ ହତ୍ୟା କର ।

ଶିବ—ଶୁଣ ପାର୍ବତୀ, ମୋ କଥା ଶୁଣ ।

ପାର୍ବତୀ— କଣ ଆଉ ଶୁଣିବ ? ପୁତ୍ର ମୋର ଯାଇଛି, ମତେ ମଧ୍ୟ ହତ୍ୟା କର ।

ଶିବ—ଗୁମ୍ଫାଦ୍ୱାରକୁ ଆସ ପାର୍ବତୀ—ପୁତ୍ରକୁ ମୁଁ ଜୀବଦାନ କରିବ ।

ପାର୍ବତୀ—ଜୀବଦାନ !

ଶିବ—ହଁ, ଆସ । (ଦୁହିଁଙ୍କର ପ୍ରସ୍ଥାନ)

# ଏକାଦଶ ଦୃଶ୍ୟ

[ ଗୁମ୍ଫାଦ୍ୱାର – ଶିବ ଓ ପାର୍ବତୀ ଆସିଲେ; କିନ୍ତୁ ଦେଖାଗଲା ସେଠି ଗଣେଶଙ୍କର ମସ୍ତକବିହୀନ ଶବ ପଡ଼ିଚ । ]

ଶିବ—ଏଁ—ଏ କଣ ? କେବଳ ଶରୀର ପଡ଼ିଚ—ଶିର ନାହିଁ ! ଶିର ନହେଲେ ଶିଶୁ ବଞ୍ଚିବ କେମିତି ?

ପାର୍ବତୀ—ଉପାୟ ଅଛି ପ୍ରଭୁ !

ଶିବ—କି ଉପାୟ ଦେବୀ ?

ପାର୍ବତୀ—ପୂର୍ଣ୍ଣ ଦଶମାସ ଗର୍ଭଧାରଣ ପରେ ଯେଉଁ ମାତା ପୁତ୍ର ଜନ୍ମ କରିଥିବ, ଆଉ ସେ ପୁତ୍ର ତା'ର ପ୍ରଥମ ସନ୍ତାନ ହୋଇଥିବ—

ଶିବ—ତା' ପରେ ?

ପାର୍ବତୀ—ସେ ପୁତ୍ରକୁ ମାତା ତା'ର ପିଠି କରି ଉତ୍ତରମୁଖା ହୋଇ ଶୋଇଥିବ···ସେଇ ଶିଶୁର ମଥା······

ଶିବ – ସେଇ ଶିଶୁର ମଥା କାଟି ଆଣି ଗଣେଶର ଶରୀର ସହିତ ଯୋଡ଼ି ଜିବଦାନ ଦେଲେ ପୁତ୍ର ତମର ବଞ୍ଚିବ ?

ପାର୍ବତୀ – ହଁ ପ୍ରଭୁ !

ଶିବ – ଶୁଣ ନନ୍ଦି ଭୃଙ୍ଗୀ, ତୁମେମାନେ ବଜ୍ରକୂଳଗଡରେ ଯାଇ ଅନ୍ୱେଷଣ କର । ଏଭଳି ଶିଶୁ ଯେଉଁଠି ପାଇବ, ତା'ର ଶିର କାଟି ଏଠିକି ଆଣିବ ।···ଯାଅ ।

ନନ୍ଦି ଭୃଙ୍ଗୀ – ଯଥା ଆଜ୍ଞା ପିତା ! (ଦୁହିଙ୍କର ପ୍ରସ୍ଥାନ)

ଶିବ – ଆମ ଅନୁଚରଗଣ ଏଠି ପ୍ରହରୀ ରହିଚନ୍ତି । ତୁମେ ଆସ ଦେବୀ, ଗୁମ୍ଫା ମଧ୍ୟରେ ଅପେକ୍ଷା କର ।

(ଶିବ ଓ ପାର୍ବତୀଙ୍କର ପ୍ରସ୍ଥାନ)

# ଶେଷ ଦୃଶ୍ୟ

[ ଗୁମ୍ଫାଦ୍ୱାର—ନନ୍ଦୀ ଭୃଙ୍ଗୀ ଫେରିଆସିଚନ୍ତି । ହାତରେ ଏକ ହସ୍ତୀଶାବକର ଶିର । ]

ଶିବ—କି ସମ୍ବାଦ ନନ୍ଦୀ ଭୃଙ୍ଗୀ ?

ନନ୍ଦୀ—ଆପଣଙ୍କ ଆଜ୍ଞାରେ ତ୍ରିଭୁବନ ବୁଲିଲୁ—କିନ୍ତୁ ଏଭଳି ଶିଶୁ କୋଉଠି ପାଇଲୁ ନାହିଁ ।

ଭୃଙ୍ଗୀ—ଠିକ୍ ସେଇଭଳି ଅବସ୍ଥାରେ ହାତିଟିଏ ପିଲା ଜନ୍ମ କରି ଶୋଇଥିଲା । ସେଇ ହାତିପିଲାର ଶିର କାଟି ଆଣିଛୁ ।

ଶିବ—ପାର୍ବତୀ···

ପାର୍ବତୀ—ସେଇ ହସ୍ତୀଶିରକୁ ଯୋଡ଼ି ଜୀବଦାନ ଦିଅ । ମୋ ପୁଅ କପରି ବଞ୍ଚୁ ।

ଶିବ—ବେଶ୍, ମୁଁ ଜୀବଦାନ କରୁଚି ।

( ହସ୍ତୀଶିରକୁ ଯୋଡ଼ି ଶିବ ଜୀବଦାନ ଦେଲେ । ଗଣେଶ ଉଠି ଠିଆହେଲେ । )

ଗଣେଶ—ମା !

ପାର୍ବତୀ—ଧନ ରେ, ମୋ ଭାଗ୍ୟ, ମୁଁ ତତେ ଫେରିପାଇଲି । ଏଇ ତୋର ପିତା କୈଳାସପତି ମହାଦେବ—ତାଙ୍କୁ ପ୍ରଣାମ କର ।

(ଗୀତ)

ଚାହିଁ ଦେଖ ବାବୁ ଅଗ୍ରତେ ଉଭା କୈଳାସପତି,
ସେ କୈଳାସପତି,
ଜୀବନଦାତା ତୋ' ଜନକ ବେଗେ କର ପ୍ରଣତି ।

ଗଣେଶ—ପ୍ରଣାମ ପିତା !

ଶିବ—ଆଶୀର୍ବାଦ କରୁଚି ବତ୍ସ—ତୁ ମହାଜ୍ଞାନୀ, ମହାପଣ୍ଡିତ ହେବୁ । ଦେଖ ପାର୍ବତୀ, ଏଇ ତମର ପୁତ୍ର ଗଜାନନ, ଗଣପତି, ଅପୂର୍ବ ଦେବ-ଦୁର୍ଲଭ କାନ୍ତି !

ପାର୍ବତୀ—ପୁତ୍ର ମୋର ଗଣନାୟକ – ସବୁ ଦେବଦେବୀଙ୍କ ମଧ୍ୟରେ ସେ ଅଗ୍ରେ ପୂଜା ଲଭ କରିବ ।

ଶିବ – ଏଣେ ଦେଖ ପ୍ରିୟେ, ଗଣନାଥର ଦର୍ଶନ ଆଉ ଭଜନ ପାଇଁ ସବୁ ଦେବଦେବୀ ଜୁଟି ହେଲେଣି । ଅତି ଆନନ୍ଦର ଦିନ ଆଜି । ଆସ ତୁମେ – ଗଣେଶଙ୍କୁ କୋଳରେ ଧରି ଏଇ ଶିଳାସନରେ ବସି ସମସ୍ତଙ୍କୁ ଦର୍ଶନ ଦିଅ ।

( ଗଣେଶଙ୍କୁ କୋଳରେ ଧରି ପାର୍ବତୀ ଶିଳାସନରେ ବସିଲେ । ଉପସ୍ଥିତ ସମସ୍ତେ ସ୍ତବ ଗାନ କଲେ । )

(ସ୍ତବ)

ନମୋ ନମୋ ଗଣପତି ନମୋ ଲମ୍ବୋଦର
ଯା ନାମ ସ୍ମରଣେ ନଷ୍ଟ ହୁଏ ପାପଭାର । ୧ ।
ତୁମ୍ଭେ ଦେବ ଏକଦନ୍ତ ତୁମ୍ଭେ ଚତୁର୍ଦ୍ଦନ୍ତ
ତ୍ରିନୟନ ଗଜାନନ ତୁମ୍ଭେ ରକ୍ତନେତ୍ର । ୨ ।
ଅମ୍ବିକେୟ ବରଦାତା ଜୟ ବିବର୍ଦ୍ଧନ
ତବ ପାଦପଦ୍ମ ଦୁଇ କରୁଚି ବନ୍ଦନ । ୩ ।
ମଦମତ୍ତ ବିରୂପାକ୍ଷ ତୁମ୍ଭେ ମହାମତି
କୋଟି ସୂର୍ଯ୍ୟ ଦୀପ୍ତିମାନ ସୁନିର୍ମଳ କାନ୍ତି । ୪ ।
କଟିତଟେ ରକ୍ତବସ୍ତ୍ର କରିଛ ଧାରଣ
ତବ ପାଦପଦ୍ମେ ଦେବ ପଶୁଚି ଶରଣ । ୫ ।

---

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ କାଳ—ପୁରାଣ ଯୁଗ । ସ୍ଥାନ—ନଗରୀର ନର୍ତ୍ତକୀ ସୁନ୍ଦରୀ ଲକ୍ଷହୀରାର ରଙ୍ଗଭବନ । ରାତି ଦ୍ୱିତୀୟ ପ୍ରହର ଉତ୍ତୀର୍ଣ୍ଣ ହୋଇଯାଇଛି । ଲକ୍ଷହୀରା ଗୀତ ଗାଉଛି । ତାର ଅନୁଚରୀ କାନ୍ତ ନୃତ୍ୟ କରୁଛି । ଉପସ୍ଥିତ ନଗରର ଦୁଇଜଣ ଶ୍ରେଷ୍ଠୀ—ଧନପତି ଓ ବିଦ୍ୟାପତି । ]

—ଗୀତ—

ଲକ୍ଷହୀରା— ହୀରା ଆଣିଛ ବନ୍ଧୁ,
ମାଳା ଆଣିଛ ବନ୍ଧୁ,
ମାଣିକ ମେଳରେ ମୋତି ଆଣିଛ ବନ୍ଧୁ । ପଦ ।
(ଆଜ) ଚହଲ ପଡ଼ିଛି କାଞ୍ଚି ରାଇଜ ଭରି,
ସତ ନୁହେଁ ମୋ ପାଦକୁ ସରଗପରୀ
ଲକ୍ଷହୀରା ମୁଁ ତ ଲକ୍ଷ ହୃଦୟରାଣୀ
ରାଇଜର ରାଜା ଭୁଲେ ତା ପାଟରାଣୀ ।
ଲକ୍ଷେ ହୀରାର ଥାଳ
ଦିଅ ଚରଣେ ଢାଳ
ରଜନୀ ବିଭବ ଲୁଚି ଅଧର-ମଧୁ । ୧ ।

ଧନପତି—ଦେବୀ ! ଦେବୀ ଲକ୍ଷହୀରା !

ଲକ୍ଷହୀର—କୁହନ୍ତୁ ।

ଧନପତି—କହିବି ଯେ—କିନ୍ତୁ ମୁଁ ଯେମିତ କଣ୍ଟୁ ବୁଝିପାରୁନାହିଁ ! ମୁଁ ଅଛି କେଉଁଠି ? ଏଇଟା କୋଉ ସ୍ଥାନ ?

ବିଦ୍ୟାପତି—ସତ କହୁଛନ୍ତି ଧନପତି ମହାଶୟ ? ବୁଝି ପାରୁନାହାନ୍ତି ?

ଧନପତି—ନା ବନ୍ଧୁ ବିଦ୍ୟାପତି—ମୁଁ ବୁଝିପାରୁନାହିଁ ।

ଲକ୍ଷହୀର—ଜାଣେ, ବୁଝିପାରିବେ ନାହିଁ ।

—ଗୀତ—

ଏଇ ମୋ ରଙ୍ଗଭବନ ଏ କେଳିପୁର
ଯମପୁରୀ ନୁହେଁ—ନୁହେଁ ଅଳକାପୁର ।
ନୁହେଁ ରାଜବାଟୀ—ନୁହେଁ ରାଣୀ ଉଆସ
ରାଜପୁତ୍ର ନାହିଁ—ନାହିଁ ଜେମା ନିବାସ,
ଭାନୁମତୀ କୁହୁକ
ଜବାଫୁଲେ ମହକ
କେ ଜାଣିବ ଝିଟେ କାହିଁ ମନର ମଧୁ
ହୀରା ଆଣିଚ ବନ୍ଧୁ....... । ୨ ।

( ନୃତ୍ୟ ଗୀତ ବନ୍ଦ ହେଲା । ଧନପତି ବିସ୍ମାରିତ ନେତ୍ରରେ ଲକ୍ଷହୀରାକୁ ଚାହିଁ ରହିଥାନ୍ତି । )

ବିଦ୍ୟାପତି—ଏବେ ବୁଝିଲେ ତ ଧନପତି ମହାଶୟ ?

ଧନପତି—ବୁଝିଲି । ଏବେ ଟିକିଏ ଦର୍ଶନର ଲାଳସା ରହିଲା ।

ଲକ୍ଷ—ଏଇ ତ—ମୁଁ ଆପଣଙ୍କ ସମ୍ମୁଖରେ । ମତେ ଦେଖୁଛନ୍ତି । ଆଉ କି ଦର୍ଶନ ?

ଧନପତି—ନୃତ୍ୟ ।

ଲକ୍ଷ—ଦେଖୁଥିଲେ ତ ମୁଁ ଗାଉଥିଲି—କାନ୍ତ ନାଚୁଥିଲା ।

ଧନପତି—ନା, ନା, ମୁଁ କହୁଥିଲି--ଦେବୀଙ୍କ ପଦରଜ—

ବିଦ୍ୟାପତି—କଣ କହିଲେ ? ପଦରଜ ? ଏଠି ଏ ମର୍ମର ଗାନ୍ଥନି—ସ୍ଫଟିକର ଚଟାଣ । ଏଠି ପଦରଜ କାହୁଁ ଆସିବ ?

ଧନପତି—ଆହା, ତୁମେ ବୁଝିପାରିଲ ନାହିଁ କବି ବିଦ୍ୟାପତି ! ମୁଁ କହୁଥିଲି ପଦରଜ, ଅର୍ଥାତ୍...

କାନ୍ତ—ଆଜ ବସୁମାତା ରଜ ପାଳୁଚନ୍ତି । ଶ୍ରେଷ୍ଠୀ ଧନପତି କଣ ସେଇ ରଜକଥା କହୁଚନ୍ତି ?

ଧନପତି—ନା, ନା, କାନ୍ତଦେବୀ, ମୁଁ ସେକଥା କହୁନାହିଁ । ମୁଁ କହୁଥିଲି ଦେବୀ ଲକ୍ଷହୀରା ଯଦି ଟିକଏ ପାଦ ଉଠାନ୍ତେ—

ଲକ୍ଷ—ଓ ! ଆପଣ ମୋ' ନୃତ୍ୟ ଦେଖିବେ ?

ଧନପତି—ଯଦି ସେତିକି ଅନୁଗ୍ରହ ଦେବୀଙ୍କର ହବ—

ଲକ୍ଷ—ନଗରୀର ନର୍ତ୍ତକୀ ମୁଁ—ବାରାଙ୍ଗନା । ମୋ' ରଙ୍ଗଶାଳାରେ ଗୋଟିଏ ରାତିର ରହଣି ପାଇଁ ଆପଣ ମତେ ଏକ ଲକ୍ଷ ହୀରା ଦେଇଚନ୍ତି । ଆପଣଙ୍କ କଥା ମୁଁ ପୁଣି ରଖିବି ନାହିଁ !!

ଧନପତି—ଭାଗ୍ୟ—ଭାଗ୍ୟ—ମୋ' ଭାଗ୍ୟ ! ଆପଣ ନୃତ୍ୟ କରିବେ —ଆଉ କାନ୍ତ ଗାଇବେ ।

କାନ୍ତ—ମୁଁ କି ଗୀତ ଗାଇବି ? ମତେ ତ ଭଲ ଗୀତ ଗାଇ ଆସେ ନାହିଁ । ଏଣୁତେଣୁ କ'ଣ ଗାଇଦେବି ।

ଧନପତି—ଆହା, ତୁମେ ଯାହା ଗାଇବ ତାହା ଅମୃତ !

କାନ୍ତ—ହଉ ହେଲା ।

(ଧନପତିଙ୍କ ନବୋଧତାରେ ଅନ୍ୟମାନେ ଆମୋଦ ଅନୁଭବ କରୁଥାନ୍ତି । ଏଇ ଅବସ୍ଥାରେ କାନ୍ତ ଗୀତ ଗାଇଲା ଓ ଲକ୍ଷ୍ୟହୀରା ନୃତ୍ୟ କଲା । )

— ଗୀତ —

କାନ୍ତ — କୋଇଲି ଡାକିଲା କୁହୁ ଗୋ
ଗୁରୁ ଚନ୍ଦ୍ର ବଦନ,
ଶୁଆ ଶାରୀ ଦୁହେଁ ମୁରୁକ ହସିଲେ,
ମୁହଁ ମୋଡ଼ିଦେଲା କାଉ ଗୋ
ଗୁରୁ ଚନ୍ଦ୍ର ବଦନ । ୧ ।

ଧନପତି — ଆହା-ହା-ଅମୃତ-ଅମୃତ !

— ଗୀତ —

କାନ୍ତ — କଳା କାଇଁଚର ପେଡ଼ି ଗୋ
ଗୁରୁ ଚନ୍ଦ୍ର ବଦନ,
ପେଡ଼ିରୁ ବାହାରି ହନୁମନ୍ତ ରାଣୀ
ଶୂନ୍ୟ ପଥେ ଯାଏ ଉଡ଼ି ଗୋ
ଗୁରୁ ଚନ୍ଦ୍ର ବଦନ । ୨ ।

ବିଦ୍ୟାପତି — ଏ ଗୀତ ତୁମକୁ ଭଲଲାଗୁଚି ବନ୍ଧୁ ଧନପତି !

( ଲକ୍ଷହୀରାଙ୍କ ଓଷ୍ଠରେ ମୃଦୁ ହସ )

ଧନପତି — ତୁମେ ନବୋଧ । ଗୁହଁ ଦେଖ, ଏ ଗୀତ ଶୁଣୁ ଶୁଣୁ ସୁନ୍ଦରୀ ରାଣୀ ଲକ୍ଷହୀରାଙ୍କ ଓଷ୍ଠଧାରରେ ଯାହା ଫୁଟିଉଠୁଚି — ତାହା ଅମୃତ !

—ଗୀତ—

କାନ୍ତି— ରାତି ଆସେ ପାହି ପାହି ଗୋ
ଗୃହୁ ଚନ୍ଦ୍ରବଦନ
କି ବୁଦ୍ଧି କରିଲ ପରବାସ କଲ
ନିଜ ବାସେ ରହି ନାହିଁ ଗୋ,
ଗୃହୁ ଚନ୍ଦ୍ରବଦନ । ୩ ।

(ନୃତ୍ୟ ଗୀତ ଶେଷ ହେଲା)

ଧନପତି—ଆହା, ଅପୂର୍ବ—ଅପୂର୍ବ !

ବିଦ୍ୟାପତି—ଏଣେ ପୂର୍ବଦିଗକୁ ଚାହିଁ, ରାତି ପାହିଲାଣି । ନିଜ ବାସରେ ରହି ମିଳିବ ନାହିଁ ଯେ ! ଉଠିଆସ । (ପ୍ରସ୍ଥାନ)

ଧନପତି—ହାୟ, ହାୟ ! ଏ ରାତି ଯଦି ନ ପାହିଥା'ନ୍ତା ! !

( ଅନିଚ୍ଛାସତ୍ତ୍ୱେ ବିଦାୟ ନେଲେ । ଲକ୍ଷହୀରା ଓ କାନ୍ତି ହସୁଥାନ୍ତି । )

# ଦ୍ୱିତୀୟ ଦୃଶ୍ୟ

[ ନଗର ଉପକଣ୍ଠରେ ଜକାର ବ୍ରାହ୍ମଣ ବିଷ୍ଣୁଦାସର ଜୀର୍ଣ୍ଣ କୁଟୀରର ବହିର୍ଭାଗ । ବିଷ୍ଣୁଦାସ ବୟସରେ ତରୁଣ । କିନ୍ତୁ ଉତ୍କଟ ବ୍ୟାଧିଗ୍ରସ୍ତ ହୋଇଥିବା ଯୋଗୁଁ ବିକଳାଙ୍ଗ । ସମୟ—ପ୍ରଭାତ । ବିଷ୍ଣୁଦାସ କୁଟୀର ଦ୍ୱାରରେ ଠିଆ ହୋଇ ଅତି ଉତ୍କଣ୍ଠାର ସହିତ ରାଜପଥକୁ ଚାହିଁ ରହିଛି । ବିଷ୍ଣୁଦାସର ଅସାମାନ୍ୟ ରୂପ-ଲାବଣ୍ୟବତୀ ସ୍ତ୍ରୀ ଅନସୂୟା ସୂର୍ଯ୍ୟଙ୍କୁ ପ୍ରଣାମ ଜଣାଇ ବନ୍ଦନା କରୁଛି ।]

—ଶ୍ଳୋକ—

ଅନସୂୟା—

ଜବାକୁସୁମସଂକାଶଂ କାଶ୍ୟପେୟଂ ମହାଦ୍ୟୁତିଂ
ଧ୍ୱାନ୍ତାରିଂ ସର୍ବପାପଘ୍ନଂ ପ୍ରଣତୋସ୍ମି ଦିବାକରଂ ।

—ଗୀତ—

ସପ୍ତାଶ୍ୱରଥବାହନ ହେ ପ୍ରଭୁ ସୂର୍ଯ୍ୟଦେବତା,
ଉଷାନାଥ ଗ୍ରହନାଥ ତମସାହରଣକର୍ତ୍ତା । ପଦ ।
ଏ ଦାସୀର ନମସ୍କାର,
ଘେନ ପ୍ରଭୁ ଦିବାକର
ପଙ୍କଜମା ହୃଦନିଧି ସର୍ବମଙ୍ଗଳକରତା । ୧ ।
ସ୍ୱାମୀ ମୋର ହୀନବୁଦ୍ଧି
ଦିଅ ତାଙ୍କୁ ସର୍ବସିଦ୍ଧି
ଏ କଳୁଷପଙ୍କୁଁ ବାରେ ଉଦ୍ଧାର କର ହେ ଧାତା । ୨ ।

ଅନସୂୟା – ସୂର୍ଯ୍ୟୋଦୟ ହେଲାଣି କେତେବେଳୁ । ଏଯାଏ ସୂର୍ଯ୍ୟଙ୍କୁ ନମସ୍କାର କରିନାହିଁ ? କଣ, ଶୁଭୁନାହିଁ ମୋ କଥା ?

ବସ୍ତୁ—(ମନକୁମନ) ଲକ୍ଷହୀରା, କଏ ସେ ନବୋଧ, ଯିଏ ମାତ୍ର ଏକଲକ୍ଷ ହୀରାରେ ତମ ମୂଲ୍ୟ ନିରୂପଣ କରିଛି ?

ଅନ—କଣ, କହୁଚ ସିବା ମୁଁ ! ଯେତେ ଔଷଧ ମହୌଷଧି କଲେ ବି ତମର ଏ ଘା' ସବୁ ଭଲ ହେଲା ନାହିଁ । ସେଦିନ ଶମ୍ଭୁ ଗୋସେଇଁ କହିଗଲେ, ସକାଳୁ ଉଠି ସୂର୍ଯ୍ୟଙ୍କୁ ନମସ୍କାର କଲେ···

ବସ୍ତୁ—ସେ କଥା ମୁଁ ଜାଣେ । ତୁ ଯା' ଏଠୁ !

ଅନ—ତୁମେ ଆସ—ମୁହଁହାତ ଧୋଇବ ।

ବସ୍ତୁ—ଯା'—ମତେ ବିରକ୍ତ କରନାଇଁ ।

ଅନ—ହୁଁ ! ସଖୀ ମେଳରେ ଲକ୍ଷହୀରା ପ୍ରତିଦିନ ଏଇ ବାଟରେ ନଈଘାଟକୁ ଯାଏ । ଆଜି ବି ତ ଏଇ ଯାଉଚି—ଆଉ ତମେ ତା' ବାଟ ଗୃହିଁ ଏଠି ଠିଆ ହୋଇ ରହିଚ । ଆଖିରେ ତମର ପଲକ ପଡ଼ୁନି । କାହିଁକି ?

ବସ୍ତୁ—ତୁ ମୋର ସ୍ତ୍ରୀ—ମୋର କିଙ୍କରୀ, ଦାସୀ । ମତେ ଏ ପ୍ରଶ୍ନ ପଗ୍ଭରିବାର ଅଧିକାର ତୋ'ର ନାହିଁ ।

ଅନ—ସ୍ୱର୍ଗର ଅପ୍‌ସରାଠୁଁ ବଳି ସୁନ୍ଦରୀ ହେଲେ ବି ଲକ୍ଷହୀରା ଗୋଟାଏ ବାରନାରୀ—ବେଶ୍ୟା—ତାର ମୁହଁଗୃହିଁବା ପାପ—

ବସ୍ତୁ—ତୁନି ହ' । ସାଇପଡ଼ିଶା ପାଁଜଣ ତତେ ଭାରି ସୁନ୍ଦରୀ ଆଉ ସତୀ କୁହନ୍ତି ବୋଲି ତୋର ଗର୍ବ ଖୁବ୍ ବଢ଼ିଯାଇଚି—ନା ?

ଅନ—ହେଲେ ସାଇପଡ଼ିଶା ଯାଏ କଥା ଯାଉଚି କାହିଁକି ? ମୁଁ ସୁନ୍ଦରୀ କି ଅସୁନ୍ଦରୀ—ସତୀ କି ଅସତୀ—ସେ କଥା ତମଠୁଁ ତ ଆଉ କେହି ବେଶି ଜାଣନ୍ତି ନାହିଁ ! ପାଣି ଦଉଚି, ଆସ, ଗାଧୋଇବ । (ଭିତରକୁ ଗଲା)

ବଷ୍ଣୁ—ମୁଁ ଘୀନହୀନ ଗରିବ । ଭିକ୍ଷା କରି ପେଟ ପୋଷେ । ଉତ୍କଟ ବ୍ୟାଧିରେ ମୋ ଦେହ ବିକଳାଙ୍ଗ ହୋଇଯାଇଛି । ମତେ ଦେଖିଲେ ଲୋକେ ଘୃଣା କରନ୍ତି । କିନ୍ତୁ ମୁଁ ଲକ୍ଷହୀରାକୁ ଦେଖି ପାଗଳ ହୋଇଯାଉଛି । ଲକ୍ଷହୀରା ବିନା ମୋ ଜୀବନର ଗତି ନାହିଁ—ମୁକ୍ତି ନାହିଁ ।

(କୁଟୀର ସମ୍ମୁଖ ଚଉପାଢ଼ୀରେ ଶୋଇଲା – ଅନସୂୟା ଆସିଲା । )

ଅନ—ଏଁ କଣ—ତମେ ପୁଣି ଶୋଇଲଣି ଯେ ?

ବଷ୍ଣୁ—କଣ ଆଉ କରିବ ?

ଅନ—ଗାଧୋଇଯାଅ, କି'ଣ ଦି'ଟା ମୁହଁରେ ଦେଇ···

ବଷ୍ଣୁ—( ବାଧାଦେଇ ) ଓଃ, ସତେ ଯେମିତି ମୋପାଇଁ ଖଜା ମାଲପୁଆ କରି ରଖିଦେଇଛ ।

ଅନ—ହସି ହସି ତମର ସେବା କରି ପାରିଲେ ମୋ ହାତର ଖୁଦ ଗୁଣ୍ଡଳ ଭଜା କଣ ଖଜାପିଠା ସଙ୍ଗେ ସମାନ ନୁହେ ? ଆସ, ଗାଧୋଇ ସାରିଲେ ଭିକ୍ଷାକରିଯିବ ।

ବଷ୍ଣୁ—ନା, ମୁଁ ଆଜି ଭିକ୍ଷା କରି ଯିବି ନାହିଁ ।

ଅନ—ଯିବ ନାହିଁ ? ଆଜି ଏ ବେଳା ଭିକ୍ଷା ନ ଆଣିଲେ ଆର ବେଳାକୁ ଯେ ଉପାସ ରହିବାକୁ ପଡ଼ିବ !

ବଷ୍ଣୁ—କହୁଛି ମୁଁ ଭିକ୍ଷା କରି ଯିବି ନାହିଁ, ଯିବି ନାହିଁ ।

ଅନ—ହଉ, ତମ ଇଚ୍ଛା ! ( ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ

[ ଏ ମଧ୍ୟରେ ତିନ ଦିନ ବିତିଯାଇଛି । ବିଷ୍ଣୁ ଦାସ ସେମିତି ଶୋଇ ରହିଚ । ]

ଅନ—(କାନ୍ଦି) ତିନି ଦିନ ତିନି ରାତି ହୋଇଗଲ୍—ମୁହଁରେ ପାଣି ଟୋପାଏ ଦଉନ—ଯେତେ ପଚାରିଲେ କିଛି କହୁନ ।

ବିଷ୍ଣୁ—କାହାକୁ ମୋର କିଛି କହିବାର ନାହିଁ ।

ଅନ—ତମ ପାଦ ଧରି ଅନୁ କରୁଚି—ମତେ କୁହ, କଣ ତମର ହୋଇଚ ? କାହିଁକି ଏ ନିଷ୍ଠୁର ପଣ ତୁମେ କରିଚ ?...କୁହ ।

ବିଷ୍ଣୁ—ଶୁଣିବୁ ? ସେ ଧୈର୍ଯ୍ୟ ତୋର ଅଛି ?

ଅନ—ଯେତେ ଦିନଯାଏ ତୁମେ ମୋ ପାଖରେ ଅଛ, ମୋର ଦମ୍ଭ, ମୋର ଧୈର୍ଯ୍ୟ କେବେ ତୁଟିବ ନାହିଁ ।

ବିଷ୍ଣୁ—ଶୁଣ୍ ତା'ହେଲେ – ମୁଁ ଚାହେଁ ଲକ୍ଷହୀରାକୁ !

ଅନ—ଲକ୍ଷହୀରାକୁ !!

ବିଷ୍ଣୁ—ହଁ ! ଲକ୍ଷହୀରାକୁ ନ ପାଇଲେ ମୁଁ ବଞ୍ଚିପାରିବି ନାହିଁ । ସେଥିପାଇଁ ଏ ମୃତ୍ୟୁ ପଣ ମୁଁ କରିଚ ।

ଅନ—ନା-ନା, ଏ ପାପ – ଏ ଅନାଚାର କଥା କୁହନାହିଁ ତମେ—କୁହନାହିଁ ।

— ଗୀତ —

ଏ କି ପଣ କର ହେ ଜୀବନେଶ୍ୱର,
ଯେନାକର ଦାସୀ ଗୁହାରି,
ବାରନାରୀ ବାରାଙ୍ଗନା ଭଲ କେବେ
ହୋଇଚ ନଜର କାହାରି ? । ୦ ।

ଲକ୍ଷେ ହୀରା ଯା'ର ଗଡକର ମୂଲ
ଲକ୍ଷେ ସଂସାର ଯେ କରପାରେ ଜୁର
ତାହାଲଗି ତୁମେ ସଂସାରୀ ପୁରୁଷ
ଯାଉଚ ସଂସାରୁ ବାହାର । ୧ ।

ବସ୍ତୁ—ତୁ ଚାଲଯା—ଚାଲଯା ଏଠୁ ! ମୋ ପ୍ରତିଜ୍ଞାରୁ କେହି ମୋତେ ଟଳାଇ ପାରିବ ନାହିଁ । ତୁ ଚାଲଯା !

—ଗୀତ—

ଯେ' ପଣ କରିଚ, ଜୀବନ ବାଜିଚ
ପାରିବେ କେ ତାହା ରୋଧ କରି ?
କରିଚି ଶପଥ ଜିନିବାରେ ସତ୍ୟ
ମୋ ଇଷ୍ଟ ଦେବତା ନାମ ସ୍ମରି । ୦ ।
ଲକ୍ଷହୀରା ଲକ୍ଷ ରମଣୀ-ମଣି ସେ,
ମୋ ଜୀବ-ଗଗନ ଧ୍ରୁବତାରା,
ସେହି ମୋ ସଂସାର, ସେହି ମୋ ବଗିଚା
ଗତି ମୁକ୍ତି ମୋ ଜୀବନତରୀ । ୧ ।
ମୁଁ ହୀନ କାଙ୍ଗାଳ, ନାହିଁ ମୋ ସମ୍ବଳ
ଦେଇ ପାରିବନି ତାର ମୂଲ,
ବଞ୍ଚିବାର ଆଶା ତୁଟାଇ ଦେଇଚି
ମରଣ ପଥ ମୁଁ ନେଲି ବରି । ୨ ।

ଅନ—ଏଇ ତେବେ ତମ ମନର କଥା ?

ବସ୍ତୁ—ହଁ । ମୁଁ ଜାଣେ, ମୁଁ ଲକ୍ଷହୀରାର ଯୋଗ୍ୟ ନୁହେଁ । ମୁଁ ତାକୁ ପାଇ ପାରିବ ନାହିଁ । ସେଇଥିପାଇଁ ମୁଁ ପଣ କରିଚି— ଏମିତି ନ ଖାଇ ନ ପିଇ ଶୁଖି ଶୁଖି ମରିବ ।

ଅନ—ନା ! ( ଅନସୂୟାଙ୍କ ସ୍ୱର ଦୃଢ଼ତାବ୍ୟଞ୍ଜକ )

ବିଷ୍ଣୁ—ନା ?

ଅନ—ଲକ୍ଷହୀରାକୁ ତୁମେ ପାଇବ ।

ବିଷ୍ଣୁ—ଏଁ, ତୁ କଣ କହୁଚୁ ଅନସୂୟା ?

ଅନ—ଠିକ୍ କହୁଚି । ନାରୀର ସେବା ଆଉ ତ୍ୟାଗ ନିକଟରେ ଏ ସଂସାରରେ କିଛି ଅସମ୍ଭବ ନୁହେଁ । ତୁମେ ଲକ୍ଷହୀରାକୁ ପାଇବ—ଆଉ ମୁଁ ପାଇବି ମୋ ସ୍ୱାମୀଙ୍କ ଜୀବନ ।

ବିଷ୍ଣୁ—ଅନ !! (ବିଷ୍ଣୁଦାସର ମୁଖମଣ୍ଡଳରେ ବିସ୍ମୟ ଓ ଆନନ୍ଦର ଚିହ୍ନ )

# ଚତୁର୍ଥ ଦୃଶ୍ୟ

[ ଲକ୍ଷହୀରାର ବାସଭବନର ସମ୍ମୁଖଭାଗ ]

ଲକ୍ଷ — ଆଲୋ କାନ୍ତ, ଆଜ କଣ ସିଏ ପୁଣି ଆସିଚ ?

କାନ୍ତ — ହଁ ଦେଖ, ଆଜ ବ ବଡ଼ ନଦାହୁଣୁ ଆସି ଦାଣ୍ଡଦୁଆରେ ବାଡ଼େ ଦୁଆରେ ସବୁ ଖରକଲଣି ।

ଲକ୍ଷ — ଚାଲଲୁ ଦେଖେଁ ।

କାନ୍ତ — ଆସ — ଏଇ ଦେଖ ।

(ଲକ୍ଷହୀରା ଦେଖିଲା ହାତରେ ସମ୍ମାର୍ଜନୀ ଧରି ଅନସୂୟା ବାହାର ଅଗଣା ଖରକୁଚି । )

ଲକ୍ଷ — ଆହା, ଏଡ଼େ ସୁନ୍ଦରୀ ସ୍ତ୍ରୀ ତ ମୁଁ କେବେ କୋଉଠି ଦେଖି ନ ଥିଲି ! ଏ ସୁନ୍ଦର ରୂପ — ଏ ସୁକୁମାର ତନୁଲତା — ପୁଣି ଉଚ୍ଚ କୁଳର ବୋହୂଭଳି ଜଣାଯାଉଚି । ଅଥଚ ହାତରେ ଝାଡ଼ୁ ଧରି ମୋ ଦୁଆରେ ଖରକୁଚି କାହିଁକି ? (ଅନସୂୟାକୁ) କିଏ ତୁମେ ଭଉଣୀ — କୁହ, ତୁମେ କିଏ ? କାହିଁକି ଆସି ମୋର ଏ ସେବା କରୁଚ ?

ଅନ — ତମର ଏ ସୁନ୍ଦର ରୂପକୁ ଏତେ ପାଖରେ କେବେ ଦେଖି ନ ଥିଲି, ଆଗେ ଥରେ ଆଖି ପୂରେଇ ଦେଖିସାରେ !

ଲକ୍ଷ — ମୁଁ ସୁନ୍ଦରୀ ସତ — ହେଲେ ଆକାଶରେ ଚନ୍ଦ୍ର ଉଇଁଲେ କୁଆଁ ତାରାର ତେଜ ବି ମଉଳିଯାଏ ।

ଅନ—ମାନ ଶୁନ୍ଦର ଦୁର୍ଭାଗ୍ୟ ତା ଜୀବନରେ ଆସେ ଅମାବାସ୍ୟା —ଠିକ୍ ସେମିତି ମୋ ଜୀବନ-ଆକାଶରେ ଆଜ ଅମାବାସ୍ୟାର ଅନ୍ଧାର ଘୋଟିଆସିଛି ।

ଲକ୍ଷ—କିଏ ତୁମେ—କିଏ ହୋଇଛ ତମର ?

ଅନ—ତମେ ନଦୀକୁ ଗାଧୋଇଯିବା ବାଟରେ ଭଗବନ୍ତ ମନ୍ଦର ପଛ ଭଙ୍ଗା କୁଡ଼ିଆର ଦୁଆର ମୁହଁ ଧରି ଯୋଉ ଭିକାରି ବ୍ରାହ୍ମଣ ଜଣକ ତମ ବାଟ ଗୁହୁଁ ଠିଆହୋଇଥାଏ···

ଲକ୍ଷ—ବୁଝିଲି । ପ୍ରତିଦିନ ଏକଲୟରେ ସେ ମୋତେ ଗୁହିଁ ରହିଥାଏ ।

କାନ୍ତି—ଇହି, କ ବାଜାଲାଙ୍କ ଅସନା ରୂପ ସେଇଟାର !

ଅନ—ସେଇ ମୋର ସ୍ୱାମୀ । ମୋ ନାଁ ଅନସୂୟା !

ଲକ୍ଷ—ତୁମେ—ତୁମେ ତାର ସ୍ତ୍ରୀ ! କାଇଁ, ତୁମକୁ ତ ମୁଁ କେବେ ଦେଖିନା ସେଠି ?

ଅନ—ଦେଖିବ କେମିତି ? ମୁଁ ଉଚ୍ଚ କୁଳର ବୋହୂ । ତମ ମୁହଁ ଗୁହିଁବା ତ ମୋର ଉଚିତ ନୁହେଁ ।

କାନ୍ତି—ହେ, କଣ ଏମିତି ବଡ଼ି ବଡ଼ି କଥା କହୁଚୁ ? ଗୁଲଯା' ଏଠୁ ।

ଅନ—ମତେ ଭଉଣୀ ବୋଲି ଡାକଚ ଲକ୍ଷହୀର—ଶୁଣିବ ନାହିଁ ମୋ କଥା ?

ଲକ୍ଷ—ଶୁଣିବ । କୁହ, ସ୍ୱାମୀ ତମର କାହିଁକି ପ୍ରତିଦିନ ଏମିତି ଏକ-ଲୟରେ ମୋତେ ଗୁହିଁରହନ୍ତି ? ଦରିଦ୍ର ବୋଲି ମୋ'ଠାରୁ କଣ କିଛୁ ଭିକ୍ଷା ଗୁହାନ୍ତି ?

ଅନ—ନା !

ଲକ୍ଷ—ତେବେ ? କଣ ସେ ଗୁହାନ୍ତି ?

—ଗୀତ—

ଅନ— ଅଘଟନ କଥା କହୁଚ
ଶୁଣ ସୁଦୟା ବହୁ,
ଗୋ ସୁଦୟା ବହୁ,
ଅଭାଗିନୀ ମୁଁ ଯେ ଦୁଃଖିନୀ
ପ୍ରାଣ ହୁଏ ମୋ ଦହୁ । ୧ ।
ଦେଖି ତୁମ ରୂପଲାବଣ୍ୟ
ସ୍ୱାମୀ ପାଗଳ ପ୍ରାୟ,
ସେ ପାଗଳ ପ୍ରାୟ,
ବୁଝିନ୍ତନ କହୁ କଥା ସେ
କହୁ ନ୍ୟାୟ ଅନ୍ୟାୟ । ୨ ।

ଲକ୍ଷ—ତମର କଣ ହତାହତ ଜ୍ଞାନ ଲୋପ ପାଇଲଣି ଅନସୂୟା ! ତମେ ବ୍ରାହ୍ମଣକୁଳର ସ୍ତ୍ରୀ ନା ?

—ଗୀତ—

ଏ' କ ବବେଚନା ତୁମର
ତୁମେ କୁଳର ବୋହୂ,
ଗୋ କୁଳର ବୋହୂ,
ଏତକରେ ରହୁ ଏ କଥା
ଆଉ ପ୍ରଘଟ ନୋହୁ । ୩ ।
ସ୍ୱାମୀ ତୁମ ସର୍ବ ଦେବତା
ସର୍ବ କରମେ ସାର,
ସେ କରମେ ସାର,
ପର ନାରୀଠାରେ ବଖାଣି
କହଁା ତାଙ୍କ ବେଭାର । ୪ ।

ଅନ—

ଛମ ଅପରାଧ ଦେଖ ଗୋ
ମୋର ଅଛୁ କ ଗୃର,
ମୋ’ ଅଛୁ କ ଗୃର ?
ତୁମେ ତାଙ୍କ ଗଡ-ମୁକଡ
ତାଙ୍କ ହୃଦୟ-ହାର । ୫ ।
ତୁମେ ଯେବେ ପ୍ରାପ୍ତ ନୋହିବ,
ଦେବେ ଜୀବନ ବଳି,
ସେ ଜୀବନ ବଳି,
ଏ ଦୁଃଖରୁ ସିନା ସେ ଦୁଃଖ
ମୋର ଯାଉଛି ବଳି । ୬ ।

ଅନ—ପଣ କରିଚନ୍ତି—ତମକୁ ନ ପାଇଲେ ନ ଖାଇ ନ ପିଇ ଶୁଖି ଶୁଖି ମରିବେ । ସେଇଥିପାଇଁ ହାତରେ ଝାଡ଼ୁ ଧରି ହୀନ ଚଣ୍ଡାଳୁଣୀ ପରି ମୁଁ ତମର ସେବା କରୁଚି । ମତେ ତମେ ଦୟାକର ।

ଲକ୍ଷ—ତମେ ଭୁଲ କରୁଚ ଅନସୂୟା—ତୁମେ ଭୁଲିଯାଉଚ ମୋ ଅବସ୍ଥା ଆଉ ତୁମ ଅବସ୍ଥାର କଥା ।

—ଗୀତ—

ରାଜା ମହାରାଜା ସାମନ୍ତ
ଶ୍ରେଷ୍ଠୀ ବଣିକକୁଳ,
ସେ ବଣିକ କୁଳ,
ପାଦତଳେ ଯାର ଲୋଟନ୍ତି
ଯାହା ପାଇଁ ଆକୁଳ । ୭ ।

ସେ ଦେଲ ତମକୁ ଯେବେ ତା'
ଉତ୍ତରୀର ଆସନ
ସେ ଉତ୍ତରୀର ଆସନ,
ଏକ୍କ ଫଳ ଦେଲ !! ଫେର ଯା'
ଏବେ ନିଜ ଭବନ । ୮ ।

ଅନ— ଏମିତ ଖାଲି ହାତରେ ମୁଁ ତମ ପାଖରୁ ଫେରିଯାଇ ପାରିବ ନାହିଁ ଲକ୍ଷ୍ମୀ ! ଧନପତିମାନଙ୍କ ପାଇଁ ତମ ଦୁଆର ରାତିକ ସକାଶେ ବନ୍ଦ ହେଲେ ତମ ଭଣ୍ଡାର କିଛି ଊଣା ହୋଇ ଯିବ ନାହିଁ । ହେଲେ ମୋ' ସ୍ୱାମୀ ଯଦି ତମକୁ ନ ପା'ନ୍ତି ତେବେ ମୋ' ସଂସାର ଉଚ୍ଛନ୍ନ ହୋଇଯିବ । ମୁଁ ହେବ ବିଧବା — ଅଲକ୍ଷ୍ମୀ ।

ଲକ୍ଷ୍ମୀ— ମୋ କଥା ମୁଁ କହିସାରିଚି ।

ଅନ—ନା, ନା, ମତେ ଦୟାକର !

କାନ୍ତ—ଏଇଟା କଥା କାହିଁକି ଶୁଣୁଚ ମ ଦେବୀ ! ସିଏ ସେମିତ ହଉଥାଉ, ତମେ ଭିତରକୁ ଚାଲ ।

ଅନ—ଲକ୍ଷ୍ମୀ, ଥରେ ଚାହିଁ ମତେ—ଦୟା କର ! ସବୁ ବିଧିବିଧାନକୁ ପଛରେ ପକେଇ ମୁଁ ତମ ଦ୍ୱାରକୁ ଧାଇଁ ଆସିଚି—ତମ ସେବା କରିଚି । କହିବ ତ ତମ ପଦସେବା କରିବ । ତମ ବସ୍ତ୍ର ପଖାଳିବ । (ଅନସୂୟାର ଏ କାତର ପ୍ରାର୍ଥନାରେ ଲକ୍ଷ୍ମୀ ବିଚଳିତା ହୋଇଉଠିଲେ ।)

ଲକ୍ଷ୍ମୀ—ଅନସୂୟା···

ଅନ—ଦୟାକର ଦେବୀ, ମୋ ସ୍ୱାମୀଙ୍କୁ ବଞ୍ଚାଅ !

ଲକ୍ଷ—ମୁଁ ,ରାଜ, ଅନସୂୟା !

କାନ୍ତ—ଦେବୀ !

ଲକ୍ଷ—ମୁଁ କଥା ଦଉଚି । ଆଜ ରାତିରେ ତମ ସ୍ୱାମୀ ମୋର ଅତିଥି ହେବେ—ତମେ ଯାଅ ।

ଅନ—ତମର—ତମର ଜୟ ହେଉ ଲକ୍ଷ୍ମୀ ! ତମେ ସୌଭାଗ୍ୟ-ବତୀ ହୁଅ । (ପ୍ରସ୍ଥାନ)

## ପଞ୍ଚମ ଦୃଶ୍ୟ

[ଲକ୍ଷହୀରାର ରଙ୍ଗଭବନ । ସମୟ—ରାତ୍ରି । ଉପସ୍ଥିତ ଧନପତି ଓ ବିଦ୍ୟାପତି । ଦୁହିଁଙ୍କ ଅବସ୍ଥାରୁ ଜଣାଯାଏ ଯେ ଦୁହେଁ ଅତି ଉତ୍କଣ୍ଠାର ସହିତ ଲକ୍ଷହୀରାର ଆଗମନକୁ ଅପେକ୍ଷା କରି ରହିଚନ୍ତି; କିନ୍ତୁ ଲକ୍ଷହୀରା ନ ଆସିବାରୁ ଦୁହେଁ ବେଳକୁବେଳ ଅସ୍ଥିର ଓ ହତାଶ ହୋଇପଡ଼ୁଛନ୍ତି ।]

ଧନପତି—କିବ ବନ୍ଧୁ ବିଦ୍ୟାପତି !

ବିଦ୍ୟାପତି—କୁହନ୍ତୁ ଧର୍ମବନ୍ଧୁ ଧନପତି !

ଧନ—କଣ ଦେଖୁଛନ୍ତି ?

ବିଦ୍ୟା—ଆପଣ ଯାହା ଦେଖିପାରୁନାହାନ୍ତି ।

ଧନ—ମୁଁ ତ ଲକ୍ଷହୀରାଙ୍କୁ ଦେଖିପାରୁନାହିଁ !

ବିଦ୍ୟା—ଓଃ !

ଧନ—ଆପଣ ତାଙ୍କୁ ଦେଖୁଚନ୍ତି କି ?

ବିଦ୍ୟା—ସେ କଥା ଆପଣ ଜାଣି ଲଭ କଣ ?

ଧନ—ତା ଅର୍ଥ ଆପଣ ଯାହା ଦେଖୁଚନ୍ତି ମୁଁ ତାହା ଦେଖିପାରୁନାହିଁ ।

ବିଦ୍ୟା—ତାହା ହିଁ ମୁଁ ଭାବୁଚି ।

ଧନ—ଗୁଡ଼ନ୍ତୁ—ଆପଣ ମିଛ କହୁଚନ୍ତି । ଲକ୍ଷହୀରା ଏ ଯାଏଁ ରଙ୍ଗ-ଭବନକୁ ଆସିନାହାନ୍ତି ।

ବିଦ୍ୟା—ଏତେବେଳକେ କଥାଟା ତା' ହେଲେ ଆପଣଙ୍କର ବୋଧଗମ୍ୟ ହେଲା ।

ଧନ—ଲକ୍ଷହୀରାଙ୍କର ଏ ଅନ୍ୟାୟ । ଏତେ ବେଳ ହେଲାଣି, ଆମେ ଅପେକ୍ଷା କରି ବସିଚୁ—ସେ ଆସୁନାହାନ୍ତି ।

ବଦ୍ୟା—କଣ ତେବେ କରିବା ?

ଧନ—ଯେତେ ଚେଷ୍ଟା କଲେ ବି ଖାଲି ହାଇମାରିବା ଛଡ଼ା ଆଉ କିଛି କରିପାରୁନାହିଁ । ଏଇ ଆସିଲେ !

ବଦ୍ୟା—ଆସିଲେ ?

ଧନ—ଏଇ ଦେଖନ୍ତୁ, ସେ ପରଦା ସେ ପାଖରେ ।

ବଦ୍ୟା—ସେ ନାଳି ପରଦା ?

ଧନ—ନା !

ବଦ୍ୟା—ତା ସେପଟକୁ ସେ ସବୁଜ ପରଦା ?

ଧନ—ନା !

ବଦ୍ୟା—ତା'—ତା' ସେ ପଟକୁ ସେ ଲୋହିତ ପରଦା ?

ଧନ—ହଁ, ଦେଖନ୍ତୁ—ପରଦା ତଳ ଅଂଶଟା ଅଳ୍ପ ଅଳ୍ପ ହଲୁଚି ।

ବଦ୍ୟା—ତା' ଅର୍ଥ ?

ଧନ—ଦେବୀ ଆସିବେ ଆସିବେ ହଉଚନ୍ତି, ଅଥଚ ଆସି ପାରୁ-ନାହାନ୍ତି ।

ବଦ୍ୟା—ତା'ହେଲେ ?

ଧନ—ମୋର ଗୀତଟିଏ ଗାଇବାକୁ ମନ ବଳୁଚି ।

ବଦ୍ୟା—ମୋର ଶୁଣିବାକୁ ବି ମନ ବଳୁଚି—ଗା'ନ୍ତୁ ।

—ଗୀତ—

ଧନ—
ସେ ପଟର ମାୟା ଭୁଲି
ଏ ପଟକୁ ଆସ ବାରେ
କଟ କଟ କଟିଦେଇ
ବସି ବସି ହାଇ ମାରେ···
ଖାଲି, ବସି ବସି ହାଇମାରେ । ୦ ।

ମଠ ମଠ କର ଯେତେ, ଛଟପଟ ହୁଏ ସେତେ
ଉକୁଟିବ ନାହିଁ କବା,
ନାଲି ଓଠେ ହସ ଧାରେ । ୧ ।
କରୁଚ କଆଁ କପଟ—ମାରୁଚ କଆଁ ଚମ୍ପଟ
କେତେ ହେବ ଭଟ ଭଟ
ଶୁଖି ତ ଯାଉଚ କଣ୍ଠ
ଦାନ୍ତ ମୂଳ ରଟ ରଟ
ଗୁଡ଼ଯାଉଅଛୁ ଘଟ ।

ବଦ୍ୟା—(ବାଧା ଦେଇ) ବନ୍ଦ ଧନପତ !

ଧନ— ଆରେ ଯାଃ ହଟ ନଟ !
ନପାତଟ କଲୁବଟ
ଶେଷକୁ ଆଶ୍ରୟ ମଠ
ଡାରେ ଡାରେ ନାରେ ନାରେ
କ ଡାରେ ଡାରେ ନାରେ ନାରେ । ୨ ।

ବଦ୍ୟା—ଏଇ ଆସିଲେ !

ଧନପତ—ମୁଁ ଜାଣିଥିଲ, ମୋ' ଗୀତ ଶୁଣି ଦେଖା ନ ଆସି ରହ-ପାରବେ ନାହିଁ ।

(ଲକ୍ଷହୀରର ପ୍ରବେଶ)

ଲକ୍ଷ—ମତେ କ୍ଷମା କରବେ !

ଧନପତ—ଆହା, ବହୁ ଆଗରୁ ସେ ଅଉଡ଼ୁଆ ତୁଟିଯାଇଚ । ଏଇ ଦେଖ ଦେଖା, ଏକଲକ୍ଷ ହୀରର ଏ ଥଳ ।

ବଦ୍ୟା—ମୁଁ କବ—ହୀରା ଦବାର କ୍ଷମତା ମୋର ନାହିଁ । ସେଥି-ପାଇଁ ଏକଲକ୍ଷ ଶ୍ଳୋକ ମୁଁ ରଚନା କର ଆଣିଚ ।

ଲକ୍ଷ—ଆଗେ ଶୁଣନ୍ତୁ ମୋ’ କଥା ।

ଧନ ଓ ବଦ୍ଧ୍ୟା—ତା ପୂର୍ବରୁ ଆମ କଥା ଶୁଣ ଦେବା !

—ଗୀତ—

ଧନ— ପାଟବସନ ଥଳରେ ଏକଲକ୍ଷ ହୀରା
ଦେନାକର ଶ୍ରୀହସ୍ତରେ ଦେବା ଲକ୍ଷହୀରା । ୧ ।

ବଦ୍ୟା— ଭୂର୍ଜ ପତ୍ରେ ଲେଖିଛି ମୁଁ ଶ୍ଳୋକ ଏକଲକ୍ଷ
ଛୁଟାଇବ ନେତ୍ରୁ ନୀର ଫଟାଇବ ବକ୍ଷ । ୨ ।

ଧନ— ହୀରାକୁଦ ହୀରା ଏହି ଦାଣେନି ହଜାର
ଦେଖି ଗୁଡ଼ ଫାଟିଗଲା ସେ ଦେଶ ରଜାର । ୩ ।

ବଦ୍ୟା— ଏହି ଶ୍ଳୋକେ ଅଛି ମୋର ଅତି ଗୂଢ଼ ଛନ୍ଦ
ବରହୀର ବକ୍ଷଜ୍ୱାଳା ମିଳନର ଗନ୍ଧ । ୪ ।

ଧନ— କମ୍ବୁ ଦ୍ୱୀପ ହୀରା ଏହି ଜମ୍ବୁ ଦ୍ୱୀପେ ସାର
ଗଡ଼ି ଆଣିଛି ଏଥିରେ ସାତ ସର ହାର । ୫ ।

ବଦ୍ୟା— ଗନ୍ଧମାଦନ ଚୂଡ଼ାରେ ରାତସାରା ବସି
ଏ ଶ୍ଳୋକ ମୁଁ ରଚିଛି ସାକ୍ଷୀ ତାରା ଶଶୀ । ୬ ।

ଧନ— ସାତ ସମୁଦ୍ର ସେପଟୁ ଏ ହୀରା ଆଣିଛି

ବଦ୍ୟା— ସାତତାଳ ପଙ୍କେ ପଶି ଏ ଶ୍ଳୋକ ଭଣିଛି । ୭ ।

ଧନ— ଏ ହୀରା ମୁଁ ଆଣିଅଛି—

ବଦ୍ୟା— ଏ ଶ୍ଳୋକ ମୁଁ ଲେଖିଅଛି—

ଲକ୍ଷ—ଶୁଣନ୍ତୁ—ଶୁଣନ୍ତୁ ମୋ’ କଥା । ଆପଣମାନଙ୍କ ହୀରା ଓ ଶ୍ଳୋକ ନେଇ ଆପଣମାନେ ଫେରିଯାନ୍ତୁ ।

ଧନ ଓ ବିଦ୍ୟା—କାହାଁକି ?

ଲକ୍ଷ—ଏଇ ଦେଖନ୍ତୁ, ସେ ଘରେ ଯିଏ ବସିଚନ୍ତି—

ଧନ—(ଭିତରକୁ ଚାହିଁ, ଦେଖି) ସେଇ ବିକଳାଙ୍ଗ ଭିକାରି ବ୍ରାହ୍ମଣ ବିଷ୍ଣୁ ଦାସ !

ଲକ୍ଷ—ହଁ, ସେଇ ବିଷ୍ଣୁ ଦାସ ଆଜି ମୋର ଅତିଥି !

ଧନ—ନା-ନା-ଲକ୍ଷ୍ମୀ···

ଲକ୍ଷ—କହିଲି ପରା, ଆପଣମାନେ ଯା'ନ୍ତୁ !

ବିଦ୍ୟା—ଆସନ୍ତୁ ଧନପତି ମହାଶୟ, ଉଠନ୍ତୁ ।

ଧନ—କିନ୍ତୁ ଯିବା କୁଆଡ଼େ ? ଅଦ୍ୟ ରାତ୍ରରେ ତ ସ୍ୱଗୃହ ପ୍ରତ୍ୟାବର୍ତ୍ତନର ବାସନା ମୋର ନଥିଲା ।

ବିଦ୍ୟା—ମଠ—ଯୋଉ ମଠ···ଗୀତ ଗାଉଥିଲେ ।

ଧନ—ଚାଲନ୍ତୁ—ଏବେ ମଠ ହିଁ ଆମ ଆଶ୍ରୟ ।

(ଦୁହିଁଙ୍କର ପ୍ରସ୍ଥାନ)

ଲକ୍ଷ—କାନ୍ତ !

(କାନ୍ତର ପ୍ରବେଶ)

କାନ୍ତ—ଦେବୀ !

ଲକ୍ଷ—ଅନସୂୟା କଣ କରୁଚି ?

କାନ୍ତ—ଭିତର ଅଳନ୍ଦରେ ବସିଚନ୍ତି—ଡାକିବି ?

ଲକ୍ଷ—ନା, ବିଷ୍ଣୁ ଦାସଙ୍କୁ ଆସିବାକୁ କୁହ ।

(ଟିକିଏ ପରେ ବିଷ୍ଣୁ ଦାସ ଆସିଲେ । ସେ ବିବ୍ରତ, ବିହ୍ୱଳିତ ।)

ଲକ୍ଷ—ଆସ, ଏଇଠି—ଏଇ ଆସନରେ ବସ । ଏ କଣ ? ତୁମେ ଏମିତି ଥରୁଚ କାହିଁକି ?

ବିଷ୍ଣୁ—ନା ତ—ନା ତ !

ଲକ୍ଷ—ନା !! ଏଇ ତ, ତମ ମୁହଁରେ ବାନ୍ଧୁ ବାନ୍ଧୁ ଝାଳ ଦେଖା ଦେଲାଣି ! ଓ ବୁଝିଲି, ମୋର ଏ ବେଶ ଭୂଷା—ସାଜ ସଜ୍ଜା ଦେଖି ତମର ବୋଧହୁଏ ଏଣୁ ତେଣୁ ଭ୍ରମ ହେଉଚି । କଣ କରିବ କୁହ—ଏଇଟା ତ ଆମ କୁଳର କଥା ! କେତେ କେତେ ରାଜା, ଧନୀ, ବଣିକ ଏଠିକି ଆସୁଚନ୍ତି । ସେମାନଙ୍କ ମନ ନବାକୁ ହେଲେ···କଣ ଶୋଷ ହେଉଚି ? ପାଣି ପିଇବ ?

ବସ୍ତ୍ର—ହଁ, ଟିକେ ପାଣି ପିଇବି ।

ଲକ୍ଷ—ହଉ ଆଣୁଚି ! ( ପ୍ରସ୍ଥାନ )

ବସ୍ତ୍ର—(ମନକୁମନ) ମୁଁ ବୁଝିପାରୁ ନାହିଁ କଣ ମୁଁ କରିବି ! ମନରେ ଯେଉଁ ଆଶା, ଯେଉଁ ବାସନା ନେଇ ଏଠିକି ଆସିଥିଲି—ଏଠି ଆସି ଦେଖୁଚି ସେ ସବୁ ଯେମିତି ସ୍ୱପ୍ନ, ମାୟା···

( ହାତରେ ଦୁଇଟି ପାଣିଭର୍ତ୍ତି ପାତ୍ର ନେଇ ଲକ୍ଷହୀରା ଆସିଲା )

ଲକ୍ଷ—ଏଇ, ପାଣି ନିଅ ।

ବସ୍ତ୍ର—ଏ କଣ ? ଏ ଦୁଇଟି ପାତ୍ରରେ ପାଣି ?

ଲକ୍ଷ—ହଁ, ଦୁଇଟି ପାତ୍ର—ଇଏ ସୁନାର ପାତ୍ର, ଆଉ ଇଏ ମାଟିର !

—ଗୀତ—

ହେ ପୂଜ୍ୟ ଅତିଥି, ହେ ବନ୍ଧୁବର,
ଦୁଇ ପାତ୍ରେ ଭରିଅଛି ମୁଁ ଜଳ ।
ସ୍ୱର୍ଣ୍ଣ ପାତ୍ର ଜଳ ଏ ସୁବାସିତ
ସେଥି ସଙ୍ଗେ ପୁଣି ମଧୁ ମିଶ୍ରିତ ଯେ,
ମାଟି ପାତ୍ରର ଏ ଜଳ ଯେ,
ପବିତ୍ର ଗୋ'କନ୍ୟା ନଦୀରୁ ଆଣିଚି
ଶୁଦ୍ଧ ପୂତ ନିର୍ମଳ ଯେ । ୧ ।

—ଗୀତ—

ବସ୍ତୁ—  ବୁଝି ନ ପାରେ ଏ ରହସ୍ୟ କବା
ଭିନ୍ନ ପାତ୍ରେ ଭିନ୍ନ ଜଳ ରଖିବା ।
ସ୍ୱର୍ଣ୍ଣ ପାତ୍ର ତୁମ ଯୋଗ୍ୟ କେବଳ
ମାଟି ପାତ୍ର ସିନା ତୁଚ୍ଛ ଅସାର ଯେ,
କପାଇଁ ତେବେ ଏ ଭ୍ରମ ଯେ,
କହ ଗୋ ପିଆଇ କେଉଁ ଜଳ ପିଇ
" ତୃଷା ମେଣ୍ଟାଇବ ମମ ଯେ । ୨ ।

—ଗୀତ—

ଲକ୍ଷ—  ନାହିଁ କିଛି ଭ୍ରମ ନାହିଁ ରହସ୍ୟ,
ନାହିଁ ଏଥି ବିଷ ନାହିଁ ପୀୟୂଷ ।
ତୁମେ ଆଜ ମୋର ପ୍ରିୟ ଅତିଥି
ଲକ୍ଷ୍ୟ ତୁମ ଲକ୍ଷ୍ୟହୀରାର ପ୍ରୀତି ଯେ,
କି କଥାକୁ ଆଉ ଡର ଯେ,
କେଉଁ ଜଳପାନେ ତୃଷା ଦୂର ହେବ
ସେ ବିଚାର ନିଜେ କର ଯେ । ୩ ।

ଲକ୍ଷ—ଲକ୍ଷହୀରାକୁ ପାଇବା ପାଇଁ ଯଦି ମରଣ ପଣ କରିପାରିଲ, ତେବେ ସାଦା ଜଳ କି ସୁବାସିତ ଜଳ କେଉଁଥିରେ ତମ ତୃଷା ମେଣ୍ଟିବ ସେ ବିଚାର କରିପାରୁନ ?

ବସ୍ତୁ—ସେ ବିଚାର ମୁଁ କଲି ଦେବୀ ଲକ୍ଷହୀରା ! ଏଇ ମାଟି ପାତ୍ରର ନିର୍ମଳ ସାଦା ଜଳ ମୁଁ ପିଉଛି ।  (ପିଇଲା)

ଲକ୍ଷ—ମଧୁର ସୁବାସିତ ଜଳ ଥାଉ ଥାଉ ନଦୀଜଳ ପିଇଲ ?

ବସ୍ତୁ—ହଁ ।

—ଗୀତ—

ସ୍ୱର୍ଣ୍ଣ ପାତ୍ର ଜଳ ମଧୁ ମିଶ୍ରିତ
ଶୋଷୀ ଜନେ ମାତ୍ର କରେ ଅମୃତ,
ରସନା ଲାଳସେ ବଢ଼େ ବାସନା
ମେଣ୍ଟେ ନାହିଁ ଶୋଷ ବଢ଼େ ଯାତନା ଯେ,
ମତେ ଭଲ ମାଟି ପାତ୍ର ଯେ,
ନାହିଁ ବାସ ନାହିଁ ବାସନା ଏଥିରେ
ଏ ଜଳ ପିଇ ମୁଁ ତୃପ୍ତ ଯେ । ୪ ।

ସୁବାସିତ ମଧୁର ଜଳରେ ଶୋଷ ମେଣ୍ଟେ ନାହିଁ, ବରଂ ବଢ଼େ । ସେଥିପାଇଁ ଏ ନଦୀଜଳ ମୁଁ ପିଇଲି । ଏଥିରେ ମୁଁ ତୃପ୍ତ ।

ଲକ୍ଷ—ଏତିକ—ଏତିକ ମୁଁ ତମଠୁଁ ଶୁଣିବାକୁ ଚାହୁଁଥିଲି । (ଡାକିଲା) ଅନସୂୟା—ଅନସୂୟା ! (ଅନସୂୟା ଆସିଲା)

ଅନ—ମତେ—ମତେ ଡାକିଲ ?

ଲକ୍ଷ—ହଁ, ଆସ, ଏଠିକି ଆସ । ତମର ଜୟ ହୋଇଛି ।

ଅନ—ଜୟ ହୋଇଛି ?

ଲକ୍ଷ—ହଁ, ତମ ସ୍ୱାମୀଙ୍କ ବିଗ୍ଚରରେ ହିଁ ତମର ଜୟ ହୋଇଛି— ଆଉ ତାଙ୍କର ହୋଇଛି ପରାଜୟ ।

ବିଷ୍ଣୁ—ମୋ ବିଗ୍ଚରରେ ?

ଲକ୍ଷ—ମୁଁ ଆଉ ଅନସୂୟା—ମୋର ଏ ବେଶଭୂଷା ଆଉ ଅଳଙ୍କାର ଭିତରେ ମୁଁ ହେଉଛି ସୁନାପାତ୍ରର ସୁବାସିତ ଜଳ । ଆଉ ଏ ସାଦା ବେଶଧାରିଣୀ ଖଣ୍ଡିଏ ପିନ୍ଧା ତମର ସଖି ଅନସୂୟା ହେଉଛି ପବିତ୍ର ଗୋଦାବରୀ ନଦୀର ଜଳ । ତମେ ବର୍ତ୍ତମାନ ଏଇ ନଦୀ

ଜଳ ପିଇଲ । ଲୁହ—ତା'ହେଲେ ତମ ଜୀବନକୁ ଧନ୍ୟ କରିବ କିଏ—ମୁଁ ନା ଏଇ ସତୀ ସାଧ୍ୱୀ ଅନସୂୟା ?

ବସ୍ତୁ—ମତେ କ୍ଷମାକର ଦେବୀ—ମୁଁ ପାପୀ, ଅଧମ । ମୋର ଭ୍ରମ ମୁଁ ବୁଝିପାରିଚି । ମତେ କ୍ଷମାକର !

ଲକ୍ଷ—ଅନସୂୟା—ଯାଅ ଭଉଣୀ, ସ୍ୱାମୀଙ୍କୁ ନେଇ ଏଥର ଘରକୁ ଫେରିଯାଅ । ଏ କ'ଣ—ତମ ଆଖିରେ ଲୁହ ?

ଅନ—ଜନ୍ମ ଜନ୍ମ ପାଇଁ ମୁଁ ତୁମ ନିକଟରେ ଋଣୀ ରହିଗଲି ଭଉଣୀ । ସଂସାର ଆଖିରେ ତୁମେ ଯାହା ହୁଅନା କାହିଁକି—ମୋ ଆଖିରେ ତୁମେ ଦେବୀ । ( ପଦଧୂଳି ନେଲା )

ଲକ୍ଷ—ଆରେ—ଆରେ, ଏ କଣ କରୁଚ ଅନସୂୟା ? ମୋର ପାଦଧୂଳି ନଉଚ ! ! ସାମାନ୍ୟ ଗୋଟାଏ ବାରନାରୀ ମୁଁ···

—ଗୀତ—

ଅନ— ବାରନାରୀ ତୁମେ ନୁହଁ ଗୋ ଭଉଣୀ
ଦେବୀ ତୁମେ ବରନାରୀ,
ଅନୁଗ୍ରହେ ତୁମ ଅନସୂୟା ହେଲା
ସଙ୍କଟ ସାଗର ପାରି ଗୋ ଭଉଣୀ,
ଦେବୀ ତୁମେ ବରନାରୀ ।୧।
ଲକ୍ଷହୀରା ନାମ ବହିଚ ଜଗତେ
ନାରୀ ମଧ୍ୟେ ତୁମେ ହୀରା,
ଭାଗ୍ୟବଳେ ସିନା ସ୍ୱାମୀଙ୍କୁ ଜିତିଲି
ତୁମ ପାଖେ ଗଲି ହାରି ଗୋ ଭଉଣୀ,
ଦେବୀ ତୁମେ ବରନାରୀ ।୨।

ଏ ଅମା ରଜନୀ ଘୋଟିଚି ଅବନୀ
ଆକାଶରେ ନାହିଁ ଜହ୍ନ,
ମୋ ଆକାଶେ ତୁମେ ସାତ ଜହ୍ନପରି
ଜୋଛନା ଦେଇଛି ଢାଳି ଗୋ ଭଉଣୀ,
ଦେବୀ ତୁମେ ବରନାରୀ । ୩ ।

ଲକ୍ଷ—ଯାଅ ଭଉଣୀ, ସ୍ୱାମୀଙ୍କୁ ସାଥିରେ ନେଇ ଯାଅ । ମୁଁ ଠାକୁରଙ୍କୁ ଜଣାଉଚି, ସ୍ୱାମୀ ତୁମର ରୋଗମୁକ୍ତ ହୁଅନ୍ତୁ । ସ୍ୱାମୀ ସନ୍ତାନ ନେଇ ସୁଖରେ ଘର ସଂସାର କର, । କିନ୍ତୁ ଏ ଅନ୍ଧକାରରେ ମୁହଁକୁ ମୁହଁ ଦିଶୁନି—ଯିବ କେମିତି ?

ଅନ—କହିଚ ପରା, ମୋର ଜୟ ହୋଇଚି !, ଏ ଅନ୍ଧାର ଆମକୁ ବାଧା ଦେଇପାରିବନି । ଯାଉଚୁ ଆମେ । (ଦୁହିଁଙ୍କର ପ୍ରସ୍ଥାନ)

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ଅମାବାସ୍ୟାର ରାତ୍ର । ପଥପାର୍ଶ୍ୱରେ ଆଗ୍ନିକ ଋଷି ଶୂଳଦଣ୍ଡ ଭୋଗୁଛନ୍ତି । ଯନ୍ତ୍ରଣାରେ ସେ ଅସ୍ଥିର । ]

ଆଗ୍ନିକ—ହେ ଭଗବାନ, ବିନା ଦୋଷରେ ମତେ ଏ ଗୁରୁଦଣ୍ଡ ଦେଲ ! ରାଜନ୍ଦରରୁ ଧନରତ୍ନ ଚୋରି କରି ଚୋରମାନେ ଆଶ୍ରମରେ ଯାଇ ଲୁଚିଲେ । ମୁଁ ନିରୀହ ଋଷି, ନୀରବରେ ବସି ଧ୍ୟାନ କରୁଥିଲି । ରାଜକର୍ମଚାରୀମାନେ ମତେ ମିଥ୍ୟାରେ ସନ୍ଦେହ କଲେ । ରାଜା ଅବୁଝା—ମତେ ଶୂଳଦଣ୍ଡ ଆଦେଶ ଦେଲା । ମୁଁ ଏ ଶୂଳଦଣ୍ଡ ଭୋଗୁଚି । ଜାଣେନା, କେତେ କାଳ ଯାଏ ମୁଁ ଏ ଯମଯନ୍ତ୍ରଣା ଭୋଗ କରୁଥିବି । ଆଃ, ଆଃ·····(ସେଇ ବାଟରେ ବିଷ୍ଣୁଦାସ ଓ ଅନସୂୟା, ଲକ୍ଷହୀରା ନିକଟରୁ ଫେରି ଆସୁଛନ୍ତି । )

ବିଷ୍ଣୁ—ଅନୁ, ଧୀରେ ଚାଲ ଅନୁ ! ଅନ୍ଧାରରେ କାଳେ କେଉଁଠି ଝୁଣ୍ଟିବ ।

ଅନ—ସତ କହୁଚ—ଆଜି ମୋ ପାଖରେ ଆଲୁଅ ଅନ୍ଧାରର ଭେଦ କିଛି ନାହିଁ । ତମକୁ ମୁଁ ଫେରି ପାଇଚି—ମୋର ଯେମିତି ନବଜନ୍ମ ହୋଇଚି ।

ବିଷ୍ଣୁ—ଉଃ···

ଅନ—କଣ, ହେଲ ? ତମକୁ ଚାଲିବାକୁ କଷ୍ଟ ହେଉଚି ?

ବସ୍ତ୍ରୁ—ନା, ଏ ଡାହାଣ ପାଦଟା······

ଅନ—ଶୁଣ, ମୋ କାନ୍ଧରେ ଭର ଦେଇ ତୁମେ ଆସ ।

ବସ୍ତ୍ରୁ—ଏମିତି ଚାଲି ପାରିବ ତୁମେ ?

ଅନ—ହଁ, ଆସ ।

(ଏଇପରି ଭାବେ ଚାଲୁଥିବା ଅବସ୍ଥାରେ ଅନସୂୟା ଅନ୍ଧାରରେ ଜାଣି ନ ପାରି ଆଣ୍ଣିକ ଋଷିଙ୍କୁ ଝୁଣ୍ଟିଲି । )

ଆଣ୍ଣିକ—ଆଃ-ଆଃ··(ଚିତ୍କାର କରି) କିଏ ? କିଏ ମତେ ଝୁଣ୍ଟିଲି ? ଯନ୍ତ୍ରଣାରେ ମୋ ମେରୁଦଣ୍ଡ ହାଡ଼ ଭାଙ୍ଗି ଚୂନା ହୋଇଯାଉଛି । କିଏ ମତେ ଝୁଣ୍ଟିଲି ?

ବସ୍ତ୍ରୁ—ଆପଣ—ଆପଣ କିଏ ?

ଆଣ୍ଣିକ—ମୁଁ ଆଣ୍ଣିକ ଋଷି ।

ଅନ – ମତେ କ୍ଷମା କରନ୍ତୁ ମହାତ୍ମା—ଅନ୍ଧାରରେ ମୁଁ ବାଟ ବାରି ନପାରି···

ଆଣ୍ଣିକ—ମିଥ୍ୟା କଥା । ଯୋଗ ବଳରେ ମୁଁ ସବୁ ଜାଣିପାରୁଛି ! ତୋର ସ୍ୱାମୀକୁ ତୁ ଫେରି ପାଇଛୁ ବୋଲି ଗର୍ବ ଅହଙ୍କାରରେ ତୁ ଧରାକୁ ସରା ଜ୍ଞାନ କରୁଛୁ ।

ଅନ—ନା-ନା ମହାମୁନି···

ଆଣ୍ଣିକ—ତୋ ଆଖିରେ ସମସ୍ତେ ତୁଚ୍ଛ—ହେୟ—ନଗଣ୍ୟ !! ଗର୍ବରେ ଅନ୍ଧ ହୋଇ ତୁ ମତେ ପଦାଘାତ କରିଛୁ । ସେଥିପାଇଁ ମୁଁ ତତେ ଅଭିଶାପ ଦେଉଛି ।

ଅନ—ଅଭିଶାପ !!

ଆଗ୍ନିକ—ହଁ, ହଁ—ମୁଁ ତୋତେ ଅଭିଶାପ ଦେଉଚି । ଯୋଉ ସ୍ୱାମୀ ପାଇଁ ତୋର ଏ ଗର୍ବ, ଏ ଅହଙ୍କାର—ଯାହାପାଇଁ ତୁ ମୁନି ଋଷିଙ୍କୁ ମଧ୍ୟ ଅବମାନନା କରୁଚୁ—ଆଜର ଏ ରାତ୍ର ପାହିଲା ମାତ୍ରେ ତୋର ସେ ସ୍ୱାମୀ ପ୍ରାଣତ୍ୟାଗ୍ କରିବ ।

ଅନ—ପ୍ରଭୁ, ଏ କି ଦଣ୍ଡ ଦେଉଛନ୍ତି ! ମୁଁ ଆପଣଙ୍କ ପାଦ ଛୁଇଁ କହୁଚି ଜାଣିଶୁଣି କିଛି ଅପରାଧ ମୁଁ କରିନାହିଁ । ମତେ କ୍ଷମା କରନ୍ତୁ !

ଆଗ୍ନିକ—ନା, ଏ ଅପରାଧର କ୍ଷମା ନାହିଁ । ଋଷିବାକ୍ୟ ଅନ୍ୟଥା ହୋଇପାରେନା ।

—ଗୀତ—

ଲୋ ନିର୍ବୋଧ ନାରୀ, ତୁହି କଲୁ ଯୋଉ କର୍ମ,
ନ ମାନିଲୁ ଇନ୍ଦ୍ର, ଚନ୍ଦ୍ର, ନ ମାନିଲୁ ଧର୍ମ
ତାର ଫଳ ଭୋଗ ଲୋ;
ଭୋଗ ଏବେ ବଇଧବ୍ୟ ଯୋଗ ଲୋ । ୧ ।
ଏ ରାତି ଯେ କାଳେ ପାହି ପ୍ରଭାତ ହୋଇବ
ସ୍ୱାମୀ ତୋର ଶମଶାନ ଚିତାରେ ଶୋଇବ
ଏହା ଧ୍ରୁବ ସତ୍ୟ ଲୋ;
ମୁନିବାକ୍ୟ ନହୁଏ ଅସତ୍ୟ ଲୋ । ୨ ।

ଅନ—ଦୟା କରନ୍ତୁ ମୁନିଶ୍ରେଷ୍ଠ, ଦୟା କରନ୍ତୁ ! ଏ ଅଭିଶାପ ଫେରାଇ ନଅନ୍ତୁ ।

ବଶିଷ୍ଠ—ମୁଁ ମୋ ପାଇଁ ଆପଣଙ୍କ ନିକଟରେ ଅଳି କରୁନାହିଁ ମହାମୁନି—ଅନସୂୟାର ଅବସ୍ଥା ଦେଖନ୍ତୁ—ତା' ପ୍ରତି ଦୟା କରନ୍ତୁ !

—ଗୀତ—

ଆଗ୍ନିକ— ବ୍ରହ୍ମଶକ୍ତି ଜାଣୁନାହଁ ତୁ ଅଜ୍ଞାନ ମୂଢ଼,
ଇନ୍ଦ୍ର ଶକ୍ତି ଠାରୁ ବ୍ରହ୍ମ-ଶକ୍ତି ଅଟେ ଗୂଢ଼,
ସେଇ ବ୍ରହ୍ମ କୋପରେ;
କରିଦେଇ ପାରେ ସୃଷ୍ଟି ଲୋପ ରେ । ୩ ।

ଆଗ୍ନିକ—ଯାଅ ଏବେ—ତୁମେ ଦୁଇଟା ଚାଲିଯାଅ ମୋ ସମ୍ମୁଖରୁ, ଚାଲିଯାଅ । ଆଃ...

ଅନ—ଏ ରାତ୍ର ପାହିଲେ ମୁଁ ମୋ ସ୍ୱାମୀଙ୍କୁ ହରାଇବ । ମୁଣ୍ଡ ଉପରେ ଏ ଅଭିଶାପର ବୋଝ ନେଇ ମୁଁ ଏଠୁଁ ଯାଇ ପାରିବି ନାହିଁ ମହାମୁନି ! ମତେ ଦୟା କରନ୍ତୁ ! (କାନ୍ଦୁଥାଏ)

—ଗୀତ—

ଅନ— ଅପରାଧ ମୁହିଁ କରିଚି ଋଷି ହେ
ମତେ ଦିଅ ଅଭିଶାପ,
କରେ ନର୍କବାସ ଯାଉ ବସବାସ
ଘାରୁ ପଛେ ଘୋର ତାପ ।
ଏ ରୂପ କୁରୂପ ହେଉ
ଜନ୍ମେ ଜନ୍ମେ ସାତ ଜନ୍ମେ—
ଏ ରୂପ କୁରୂପ ହେଉ,
ଚଉଦ ଭୁବନେ କାହିଁ
ଏ ଆତ୍ମା ଶାନ୍ତି ନ ପାଉ । ୧ ।
ମହାଆତ୍ମା ମହାପୁରୁଷ ତୁମେ ହେ
ମୋ ଦୁଃଖ ହରଣ କର,

ମୋ ଜୀବନ ନେଇ ମୋ ସ୍ୱାମୀ ଦେବତା
ଜୀବନକୁ ରକ୍ଷାକର ।
ବ୍ରହ୍ମ ତେଜେ ଜାଳ ମତେ,
ସ୍ୱାମୀଙ୍କୁ ମୋ ରକ୍ଷାକର ।
ଏତିକି ଅଳି ହେ ପ୍ରଭୁ,
ସ୍ୱାମୀଙ୍କୁ ମୋ ରକ୍ଷାକର । ୨ ।

ଅନ—ଅପରାଧ ମୁଁ କରିଚି ପ୍ରଭୁ—ମୋ ଜୀବନ ନେଇ ମୋ ସ୍ୱାମୀଙ୍କ ଜୀବନ ରକ୍ଷା କରନ୍ତୁ । ପତିବ୍ରତା ସତୀ ନାରୀ ମୁଁ—ବୈଧବ୍ୟ ଯୋଗରୁ ମତେ ମୁକ୍ତ କରନ୍ତୁ ।

ଆଗ୍ନିକ—ନା-ନା, ମୁଁ କିଛି ଶୁଣିବି ନାହିଁ । କାହାରି କଥା ଶୁଣିବି ନାହିଁ ।

—ଗୀତ—

ଦେବଲୋକଠାରୁ ନାଗଲୋକଯାଏ
ସର୍ବେ ହୋଇ ଯେବେ ଯୋଡ଼ହସ୍ତ,
ଜାନୁ ପାତି ମୋର ପାଦତଳେ ବସି
କରି ସର୍ବେ ଯେବେ ମଥା ନତ,
କଲେ ମତେ ଅଳି ଯିବ ନାହିଁ ଭଳି
ଟଳିଯିବ ନାହିଁ ମୋର କଥା,
ଆଗ୍ନିକ ଋଷି ମୁଁ ବୁଝେ ନାହିଁ କିଏ
ସତୀ ଆଉ କିଏ ପତିବ୍ରତା ।

ଅନ—ତା'ହେଲେ ଶୁଣନ୍ତୁ ମୁନିବର—ନିର୍ଦ୍ଦୋଷ ମୁଁ—ମୁଁ ଏ ଅନ୍ୟାୟ ସହି ପାରିବି ନାହିଁ । (ଅନସୂୟା କଣ୍ଠରେ ଦୃଢ଼ତା)

ଆଗ୍ନିକ—ସହ୍ୟ ପାରିବୁ ନାହିଁ ?

ଅନ—ନା ।

ଆଗ୍ନିକ—ତୁ ମହିବା ପୂର୍ବରୁ ଏ ରାତ୍ର ପାହିଥିବ ।

ଅନ—ନା – ଏ ରାତ୍ର ପାହିବ ନାହିଁ । ମୁଁ ଯଦି କାୟ ମନ ବାକ୍ୟରେ ସତୀ ହୋଇଥାଏ—ମୋର ପତିବ୍ରତା ଧର୍ମ ଯଦି ମୁଁ ପାଳନ କରିଥାଏ—ତେବେ ମୁଁ କହୁଚି—ଏ ରାତ୍ର ପାହିବ ନାହିଁ ।

ବସ୍ତି—ଅନ !

ଆଗ୍ନିକ—ତୋର ଏ ଗର୍ବ, ଏ ଅହଙ୍କାର !

ଅନ—ହଁ, ମୁନିବାକ୍ୟ ଯଦି ଅନ୍ୟଥା ନ ହୁଏ, ତେବେ ସତୀବାକ୍ୟ ମଧ୍ୟ ଅନ୍ୟଥା ହେବ ନାହିଁ ।

—ଗୀତ—

ଦେବଲୋକଠାରୁ ନାଗଲୋକ ଯାଏ
ସମସ୍ତଙ୍କୁ ଯୋଡ଼ି ହସ୍ତ,
ସବୁ ଦେବ ଦେବୀ ପାଦତଳେ ମୁହିଁ
କରି ମୋର ମଥା ନତ,
କଲ୍ୟାଣ କରୁଚି ପରାଣ ଆକୁଳେ
ସତୀ ମାନ ରକ୍ଷା ପାଇଁ,
ସତୀ ଯେବେ ମୁହିଁ ପତିବ୍ରତା ନାରୀ
ଏ ରାତ୍ର ପାହିବ ନାହିଁ । ୧ ।
ସତୀ ମା' କମଳା, ସତୀ ଗିରିବାଳା
ସତୀ ମାତା ମହାମାୟା,

ସାକ୍ଷୀ ତୁମେ ମାଏ, ଡାକ ଡାକ କହେ
କହେ ସତୀ ଅନସୂୟା—
ନ ପାହୁ ରାତ
ନ ମରୁ ପତ
ଏକ ରାତ ହେଉ ସପତ ରାତ । ୨ ।

[ ସଙ୍ଗେ ସଙ୍ଗେ ଆକାଶ ପୃଥିବୀ ପ୍ରକମ୍ପିତ କରି ଏକ ଶବ୍ଦ ଶୁଣାଗଲା ଓ ରାତି ଗାଢ଼ରୁ ଗାଢ଼ତର ହେବାକୁ ଲାଗିଲା । ସମସ୍ତ ଜୀବଜଗତ ପ୍ରମାଦ ଗଣିଲା । ଏଇ ଅବସ୍ଥାରେ ଆତଙ୍କିତ ନାଗରିକ-ମାନଙ୍କର ସ୍ୱର ଶୁଣାଗଲା । ]

ପ୍ରଥମ ସ୍ୱର—ଏ କ'ଣ ? ଏ କି ଅସମ୍ଭବ କଥା । ଏ ରାତ ପାହୁନାହିଁ କାହିଁକି ?

ଦ୍ୱିତୀୟ ସ୍ୱର—କୁଆଁତାରା ଉଦୟ ହୋଇ ପହରେ ପହରେ ବିତିଗଲାଣି,—କିନ୍ତୁ ସିନ୍ଦୂରା ନ ଫାଟି ଆହୁରି ଅନ୍ଧାର ମାଡ଼ିଆସୁଛି !

ସ୍ୱ୧—ଏ ଅଘଟଣ ଘଟୁଛି କାହିଁକି ? ଏ ରାତ କଣ ପାହିବ ନାହିଁ ?

ସ୍ୱ୨ – ଏ ସୃଷ୍ଟି କଣ ଧ୍ୱଂସ ହୋଇଯିବ ?

ସ୍ୱ୧—ଏଇ ତ, ଜନବସତି ଭିତରେ ସିଂହ ବାଘ ଆଦି ହିଂସ୍ର ଜନ୍ତୁ ପ୍ରବେଶ କଲେଣି—ଅସୁରମାନଙ୍କର ବିକଟ ଚିତ୍କାର ଶୁଣା-ଯାଉଛି ।

ସ୍ୱ୨—ହେ ଭଗବାନ, ବିଷ୍ଣୁ—ରକ୍ଷାକର—ରକ୍ଷାକର !

ସ୍ୱ୧—ହେ ପ୍ରଭୁ ସୂର୍ଯ୍ୟ ଦେବତା—ଆଉ କୁଣ୍ଠା ନ କରି ପୂର୍ବ ଦିଗରେ ଉଦୟ ହୁଅ ପ୍ରଭୁ—ଉଦୟ ହୁଅ !

—ଗୀତ (ମିଳିତ କଣ୍ଠ)—

ସୂର୍ଯ୍ୟ ହେ—

ହେ ସୂର୍ଯ୍ୟ, ହେ ଛାୟାକାନ୍ତ,
ଅଂଶୁମାଳୀ ହେ ଆଦିତ୍ୟ,
କୁହ ପ୍ରଭୁ, କୁହ କେବେ ଏ ନଶି ହେବ ପ୍ରଭାତ ?

ସୂର୍ଯ୍ୟ ହେ—

ଲୋକ ଲୋଚନରୁ ଅନ୍ତର ହୋଇ
କେଉଁଠି ରହିଲ ରବି,
କେଉଁ ଗଗନରେ ହଜିଗଲା ତୁମ
ଉଦୟ କାଳର ଛବି !

କାହିଁ ଗଲେ ତୁମ ସପତ ଅଶ୍ୱ,
କାହିଁଗଲା ତୁମ ରଥ,
ଅନ୍ତ ହୀନ ଏ ତମସା ରଜନୀ
କାହିଁ ତୁମ ଛାୟାପଥ ?

ସୂର୍ଯ୍ୟ ହେ·····ସୂର୍ଯ୍ୟ ହେ,
ଏ'କି ସୃଷ୍ଟିର ଅବସାନ !
ଏ କି ପ୍ରଳୟର ଅଭିଯାନ !

ହେ ସୂର୍ଯ୍ୟ, ହେ ଛାୟାକାନ୍ତ,
ଅଂଶୁମାଳୀ, ହେ ଆଦିତ୍ୟ,
କୁହ ପ୍ରଭୁ, କୁହ କେବେ
ଏ ନଶି ହେବ ପ୍ରଭାତ । ୧ ।

ଆଉ ନିର୍ଦ୍ଦୟ ହୁଅନା ଦେବ,
ଦିଅ ଆଲୋକ ଦୁଆର ଖୋଲି,
ତିମିର ତଳୁ ଏ ଜୀବ
ଗୃହୁଁ ଥରେ ଆଖି ମେଲି ।

ଅନ୍ଧକୂପ ତଳୁ କୋଟି ମାନବର
ଶୁଣିକି ପାରୁନ ତ୍ରାହି ତ୍ରାହି ସ୍ୱର ?
ଏ କି ଜୀବଜଗତର ଶେଷ
କିଛି ରହିବନି ଅବଶେଷ !

ସୂର୍ଯ୍ୟ ହେ· · ·ସୂର୍ଯ୍ୟ ହେ,
ହେ ସୂର୍ଯ୍ୟ, ହେ ଛାୟାକାନ୍ତ,
ଅଂଶୁମାଳୀ ହେ ଆଦିତ୍ୟ,
କୁହ ପ୍ରଭୁ, କୁହ କେବେ ଏ ନିଶି ହେବ ପ୍ରଭାତ । ୨ ।

# ଦ୍ୱିତୀୟ ଦୃଶ୍ୟ

[ସ୍ୱର୍ଗପୁର । ଜୀବ-ଜଗତର ଏ ଦୁର୍ଦ୍ଦଶାରେ ବିଚଳିତ ହୋଇ ବ୍ରହ୍ମାଙ୍କ ସହ ଦେବଗଣ ବିଷ୍ଣୁଙ୍କ ନିକଟରେ ଉପସ୍ଥିତ ହୋଇଛନ୍ତି ।]

ବ୍ରହ୍ମା — ଏଥର କୁହନ୍ତୁ ପରମେଶ୍ୱର, ଏ ସୃଷ୍ଟି କଣ ଧ୍ୱଂସ ହୋଇଯିବ ?

ବିଷ୍ଣୁ —ଆପଣ ତ ସୃଷ୍ଟିକର୍ତ୍ତା, ବ୍ରହ୍ମା ! ଏ ପ୍ରଶ୍ନ ଆପଣ ମତେ ପଚାରୁଛନ୍ତି କାହିଁକି ?

ବ୍ରହ୍ମା — ମୁଁ ସୃଷ୍ଟିକର୍ତ୍ତା ସତ — ଆପଣ ହେଉଛନ୍ତି ପାଳନକର୍ତ୍ତା । ଏ ସୃଷ୍ଟି ରକ୍ଷାର ଦାୟିତ୍ୱ ଆପଣଙ୍କର । ସାତଦିନ ସାତରାତି ହୋଇଗଲା, ମର୍ତ୍ତ୍ୟରେ ସୂର୍ଯ୍ୟୋଦୟ ହୋଇନାହିଁ ।

ବିଷ୍ଣୁ —ମୁଁ ନିରୁପାୟ ପିତାମହ ! ସତୀ ଅନସୂୟାଙ୍କ ବାକ୍ୟ କେବେ ଅନ୍ୟଥା ହେବ ନାହିଁ । ସତୀ ତାଙ୍କ ବାକ୍ୟ ଫେରାଇ ନନେଲେ ଏ ମହାରାତ୍ରିର ଅବସାନ ହେବ ନାହିଁ ।

ବ୍ରହ୍ମା — କିନ୍ତୁ ସତୀ ତାଙ୍କ ବାକ୍ୟ ଫେରାଇ ନେଲେ ତାଙ୍କ ସ୍ୱାମୀଙ୍କ ଜୀବନ ରକ୍ଷା···

ବିଷ୍ଣୁ — ସେଇଥି ପାଇଁ ତ କହୁଚି — ମୁଁ ନିରୁପାୟ !

ବ୍ରହ୍ମା — ଆପଣ ଆଉ ଛଳନା କରନ୍ତୁ ନାହିଁ ଗୋଲୋକବିହାରୀ ! କହନ୍ତୁ, ଉପାୟ କଣ ?

ବିଷ୍ଣୁ — ଏକମାତ୍ର ଉପାୟ — ସତୀ ଯଦି ସ୍ୱଦେହରେ ସ୍ୱର୍ଗକୁ ଆସି ପାରନ୍ତେ···

ବ୍ରହ୍ମା – କିନ୍ତୁ ଅନସୂୟା ଯେ ମାନବୀ ?

ବିଷ୍ଣୁ – ସେ ଉପାୟ ଆପଣ କରିବେ । ଆପଣ ବିଧାତା ପୁରୁଷ । ଆପଣ ବର ଦେଲେ ସତୀ ସ୍ୱଦେହରେ ସ୍ୱର୍ଗକୁ ଆସିପାରିବେ ।

ବ୍ରହ୍ମା – ଧନ୍ୟ ଆପଣ ଛଳନାମୟ ! ବେଶ୍, ମୁଁ ଏଇ ମୁହୂର୍ତ୍ତରେ ବର ପ୍ରଦାନ କରୁଚି – ଅନସୂୟା ସ୍ୱଦେହରେ ସ୍ୱର୍ଗକୁ ଆଗମନ କରନ୍ତୁ ।

[ ଧ୍ୟାନରତ ବ୍ରହ୍ମା ଊର୍ଦ୍ଧ୍ୱକୁ ବାହୁ ପ୍ରସାରଣ କରି ବର ପ୍ରଦାନ କଲେ । ପର ମୁହୂର୍ତ୍ତରେ ପଟ୍ଟବସ୍ତ୍ର-ସୁଶୋଭିତା ଅନସୂୟା ଦେବ-ଲୋକରେ ଉପସ୍ଥିତ ହେଲେ ଓ ଆଖିର ପଲକରେ ଦେବଦେବୀଙ୍କ ଗହଣରେ ସମସ୍ତ ସ୍ୱର୍ଗପୁରୀ ବୁଲି ଦେଖିଆସିଲେ ।]

ବିଷ୍ଣୁ – ସମସ୍ତ ସ୍ୱର୍ଗପୁରୀ ତ ବୁଲି ଦେଖିଲ – ଏବେ କୁହ ସତୀ ଅନସୂୟା, ମର୍ତ୍ତ୍ୟପୁରୀକୁ କି ସମ୍ବାଦ ନେଇ ଫେରିଯିବ ? କଣ ଏଠି ଦେଖିଲ ?

ଅନ – ନନ୍ଦନକାନନରୁ ନରକପୁରୀ ସବୁଠି ମୋ' ଆଖି ଆଗରେ ଭାସିଉଠିଲା ସେଇ ଗୋଟିଏ ଚିତ୍ର ।

ବିଷ୍ଣୁ – କଣ ସେ ଚିତ୍ର ?

ଅନ – ପ୍ରଭୁ ଗୋଲୋକବିହାରୀ ଭଗବାନ ବିଷ୍ଣୁ – ସବୁଠି ସେ ବିଦ୍ୟମାନ ।

ବିଷ୍ଣୁ – ମୁଁ କିନ୍ତୁ ତମ ମୁହଁରୁ ମୋର ଏ ସ୍ତୁତିଗାନରେ କେବଳ ସନ୍ତୁଷ୍ଟ ହୋଇ ପାରିବି ନାହିଁ । ତମ ପାଖରେ ମୋର ନିବେଦନ ଅଛି ।

ଅନ – ନିବେଦନ ?

ବିଷ୍ଣୁ – ମର୍ତ୍ତ୍ୟ ଆକାଶରେ କଣ ସୂର୍ଯ୍ୟ ଉଇଁବେ ନାହିଁ ? ମର୍ତ୍ତ୍ୟର ଏ କାଳରାତ୍ରି କଣ ପାହିବ ନାହିଁ ?

ଅନ — ଏ ପ୍ରଶ୍ନର ଉତ୍ତର ମୁଁ ଦେବ ?
ବସ୍ତ୍ର — ହଁ, ତୁମେ ।

— ଗୀତ —

ଆଜ ଏ ଗୋଲୋକ ଧାମେ
ଗୋଲୋକବିହାରୀ ଯେ,
ସତୀ ଅନସୂୟା ପାଶେ
ଜଣାଏ ଗୁହାରି ଯେ । ୦ ।
ଲକ୍ଷ୍ମଣରେ ଶକ୍ତିଭେଦ
ଗନ୍ଧମାଦନୁଁ ଔଷଧ
ଏକ ରାତି ମଧ୍ୟେ ହନୁ ଆଣିଲା କପରି ଯେ । ୧ ।
ତୁମ ବାକ୍ୟ ବଳେ ସତୀ
ରାତି ହେଲା ଯାତ ରାତି
ସୁମିତ୍ରାନନ୍ଦନ ଚେତା ପାଇଲେଣି ଫେରି ଯେ ।୨।
ଜଣାଇଲି ସବୁ ଭେଦ
ମନେ ଯଦା ନାହିଁ ଖେଦ
କୁହ ମନକଥା ଖୋଲି ସଂଶୟ ନ କରି ଯେ । ୩ ।

ଅନ —

— ଗୀତ —

ତୁମ କୃପାବଳେ ନାଥ,
ଜାଣିଲି ସବୁ ବୃତ୍ତାନ୍ତ
ସବୁ ସିନା ତୁମ ଚକ୍ର ପ୍ରଭୁ ଚକ୍ରଧାରୀ ହେ,
ଶୁଣ ମୋ ଦମ୍ଭିନୀ ପ୍ରଭୁ ଗୋଲୋକବିହାରୀ ହେ ।
ଜଗତ କଲ୍ୟାଣ ପାଇଁ
ମୋ' ବାକ୍ୟ ନେଲ ଫେରାଇ
ମର୍ତ୍ତ୍ୟରୁ ଏ କାଳରାତି ଯାଉ ଅପସରି ହେ !
ଶୁଣ ମୋ ଦମ୍ଭିନୀ··· । ୪ ।

ବସ୍ତୁ—ସବୁ ତ ଶୁଣିଲ ଦେବୀ ! ତୁମେ ତୁମ ସ୍ୱାମୀଙ୍କ ଜୀବନ ରକ୍ଷା ପାଇଁ ପ୍ରାଣପାତ କରୁଥିଲ ବେଳେ ଲଙ୍କା ଯୁଦ୍ଧରେ ଲକ୍ଷ୍ମଣଙ୍କ ବକ୍ଷରେ ଶକ୍ତିଭେଦ ହେଲା । ରାତି ପାହିବା ପୂର୍ବରୁ ଗନ୍ଧମାଦନ ପର୍ବତରୁ ଔଷଧ ନ ଆସିଲେ ଲକ୍ଷ୍ମଣ ବଞ୍ଚିବେ ନାହିଁ । ଔଷଧ କିନ୍ତୁ ଆସିବ କପରି ? ଆଉ କଥା ତେଣିକି ଥାଉ, ପବନ-ସୁତ ହନୁମାନ ମଧ୍ୟ ସାତ ଦିନ ସାତ ରାତି ପୂର୍ବରୁ ଏ ଦୂରୂହ କାର୍ଯ୍ୟ କରି ପାରିବେ ନାହିଁ । ସେଇଥିପାଇଁ ଏ ମହାଯୋଗ ଘଟିଲା । ତୁମ ବାକ୍ୟ ବଳରେ ଏକ ରାତି ସାତରାତି ହେଲା—ହେଲା ଲକ୍ଷ୍ମଣଙ୍କ ଜୀବନ ରକ୍ଷା । ବର୍ତ୍ତମାନ ତୁମେ ଗୃହିଁଲେ ଏ ଜୀବଜଗତ ରକ୍ଷା ହେବ ।

ଅନ—ମୋ' ସ୍ୱାମୀଙ୍କ ମଙ୍ଗଳ ପାଇଁ ମୁଁ ମୋ' ନିଜ ସ୍ୱାର୍ଥ ଜଳାଞ୍ଜଳି ଦେଇଥିଲି । ବର୍ତ୍ତମାନ ଜଗତର ମଙ୍ଗଳ ପାଇଁ ମୁଁ ମୋର ସାଂସାରିକ ସ୍ୱାର୍ଥ ତ୍ୟାଗ କରୁଛି—ଏ ମର୍ତ୍ତ୍ୟର ଏ ରାତି ଏବେ ପାହୁ ।

ବସ୍ତୁ—ତୁମର ପରୀକ୍ଷା ଶେଷ ହୋଇଛି ଦେବୀ ! ତୁମେ ସ୍ୱଦେହରେ ସ୍ୱର୍ଗ ଦର୍ଶନ କରିବ । ତୁମର ଏଇ ପୁଣ୍ୟବଳରେ ସ୍ୱାମୀ ତୁମର ରୋଗମୁକ୍ତ ହୋଇ ଦୀର୍ଘ ଜୀବନ ଭୋଗ କରିବେ । ଆଉ ତୁମର ଏ ଅଲୌକିକ କାହାଣୀ ଯୁଗ ଯୁଗ ଧରି ଲୋକମୁଖରେ ପ୍ରଚଳିତ ରହିବ—"ନପାହୁ ରାତି, ନମରୁ ପତି,
ଏକ ରାତି ହେଉ ସପତ ରାତି ।"

———

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ କାଳ—ପୁରାଣ ଯୁଗ । ସ୍ଥାନ—ଜେନାବଳୀପୁର ରାଜ୍ୟର ରାଜପ୍ରାସାଦ । ତିନି ଦାନବ ବୀର—ମହିଷାସୁର, ଶୁମ୍ଭ ଓ ନିଶୁମ୍ଭ ଉପସ୍ଥିତ । ]

ମହିଷା—ହାଃ-ହାଃ-ହାଃ···ଏଣିକି ଆଉ ଦେବଗଣ ମଥା ଗୁଞ୍ଜିବାକୁ ମୁଦ୍ଧା କେଉଁଠି ସ୍ଥାନ ପାଇବେ ନାହିଁ । ମୋର ଦିଗ୍‌ବିଜୟ ପଥରେ—ତୁମେ, ଦୁଇ ଦାନବ ବୀର ଶୁମ୍ଭ ନିଶୁମ୍ଭ ସହିତ ମୋର ଏହି ଯେ ମିତ୍ରତା ହେଲା, ଏଥିରେ ଦେବଗଣ ମଧ୍ୟ ପ୍ରମାଦ ଗଣିବେ । ସେମାନଙ୍କୁ ପୁଣି ତୁମ୍ଭେ ଭୟ କରୁଛ ?

ଶୁମ୍ଭ—ଭୟ ! ହାଃ-ହାଃ-ହାଃ । ଭୟ ଆମେ କାହାକୁ କରୁନା ଦାନବରାଜ ! ମାତ୍ର, ଯେଉଁ ଦେବତାମାନଙ୍କ ବର ଲଭ କରି ଆମେ ବଳୀୟାନ ହୋଇଛୁ, ସେମାନେ ଯେତେବେଳେ ଜାଣିବେ ଯେ ପ୍ରବଳପ୍ରତାପୀ ମହିଷାସୁର ସହିତ ଶୁମ୍ଭ ନିଶୁମ୍ଭ ନିଷ୍ଠୁର ବିଜୟ କରିବାକୁ ସ୍ଥିର କରିଛନ୍ତି···

ମହିଷା—ସେମାନଙ୍କ ମନରେ ଦୁଃଖ ହେବ—ସେମାନେ ଅନୁତାପ କରିବେ—ଏଇଆ ତ ?

ନିଶୁମ୍ଭ—ଠିକ୍ ସେଇ କଥା ଆମେ କେବଳ ମହିଷାସୁରଙ୍କୁ ଚେତାଇ ଦେଉଥିଲୁ ।

ମହିଷା—ବୀରଭୋଗ୍ୟା ଏ ବସୁନ୍ଧରା ! କିଏ ଦୁଃଖ କଲା ବୋଲି ଆମେ କାପୁରୁଷ ପରି ଲୁଚାଉଥିବୁ ନାହିଁ । ଆମ ବାହୁବଳରେ ଯାହା ଆମ ହାତମୁଠାକୁ ଆସିବ, ଆମେ ତାହା ଭୋଗ କରିବୁ । କେହି ବାଧା ଦେଲେ ତାର ସମୁଚିତ ପ୍ରତିଫଳ ସେ ଭୋଗ କରିବ ।

—ଗୀତ—

ମେଦିନୀ କମ୍ପିବ ବାସୁକି ଟଳିବ
ଇନ୍ଦ୍ର ପୁରୀ ହେବ ଥରହର,
କ୍ଷଣକେ ବିଧୁର କରିପାରୁ ଜୁର
ବିଫଳ ନୁହେଁ ତ ବ୍ରହ୍ମା-ବର । ପଦ ।
ଦେବଲୋକଠାରୁ ନାଗଲୋକ ଯାଏ
ବରଣ କରିବେ କିଙ୍କର ପରାଏ,
ଶରଣ ପଶିବେ ଦାନବ ଚରଣେ
ମରଣକୁ ଯେବେ ଥାଏ ଡର । ୧ ।

ଶୁମ୍ଭ—ଧନ୍ୟ, ଧନ୍ୟ ତୁମ୍ଭେ ବୀର ମହିଷାସୁର ! ଆମ୍ଭେ ଶୁମ୍ଭ ନିଶୁମ୍ଭ ତୁମ୍ଭ ମଥାରେ ବିଜୟ-ମୁକୁଟ ପିନ୍ଧାଇ ଦେଉଛୁ । ଆଜିଠୁ ତୁମେ ଏ ଜେନାବଳୀପୁର ରାଜ୍ୟର ରଜା ।

( ମଥାରେ ମୁକୁଟ ପିନ୍ଧାଇଦେଲେ )

—ଗୀତ—

ରକ୍ଷକୁଳବୀର ହେ ମହିଷାସୁର
ଭୋଗ କର ତୁମେ ଜେନାବଳୀପୁର
କୁଳବନ୍ତୀ ନାରୀ ରାଜତ୍ୱ ଆମର
କି କରିବେ ଆବା ବସୁନ୍ଧର । ୨ ।

ମହିଷା—ଯୋଗ୍ୟ ସହିତ ଯୋଗ୍ୟର, ମହତ୍‌ଜନ ସହିତ ମହତ୍ ଜନର ମିଳନ ଘଟିବ । ଏଣିକି ଦାନବକୁଳ ନିଷ୍କଣ୍ଟକ ।

ନିଶୁମ୍ଭ—ଆମକୁ ଏବେ ବିଦାୟ ଦିଅ ଦାନବ ବୀର ! ଥାଟବାଟ ନେଇ ଆମେ କୁଳ୍‌ବଣ୍ଟି ପାଟଣା ଫେରିଯାଉଚୁ । ଯଥାକାଳରେ ଆମକୁ ସ୍ମରଣ କରିବେ ।

( ଶୁମ୍ଭ ଓ ନିଶୁମ୍ଭର ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

[ କୁଳବଣ୍ଟପାଟଣା ରାଜପ୍ରାସାଦ । ଶୁମ୍ଭ ଓ ନିଶୁମ୍ଭ ସିଂହାସନରେ ଆସୀନ । ନାରଦ ପ୍ରବେଶ କଲେ । ]

ନାରଦ—ନାରାୟଣ, ନାରାୟଣ !

ଶୁମ୍ଭ—ଆସନ୍ତୁ—ଆସନ୍ତୁ ଦେବର୍ଷି ନାରଦ ! ଆସନ ଗ୍ରହଣ କରନ୍ତୁ । ଆଗମନର ଉଦ୍ଦେଶ୍ୟ ?

ନାରଦ—ତମର ଏ ରାଜପୁରୀ ବୁଲି ଦେଖି ଆସିଲି । ଅପୂର୍ବ— କେବଳ ଅମରାବତୀ ହିଁ ଏହାର ପଟାନ୍ତର । ହେଲେ, ବାବୁ ଶୁମ୍ଭ ନିଶୁମ୍ଭ...

ନିଶୁମ୍ଭ—କହନ୍ତୁ ମୁନି ! ଅଟକିଗଲେ କାହିଁକି ?

—ଗୀତ—

ନାରଦ—ଦାନବକୁଳ ଚନ୍ଦ୍ରମା

କୁଳବଣ୍ଟି ନଗ୍ର ରାଏ,

ଶତ ରାଜା ଧନ ଥାଇ (ତୁମ)

କିଛି ନ ଥିଲାର ପ୍ରାୟେ । ପଦ ।

ଶୁମ୍ଭ—କି ଅସମ୍ଭବ କଥା କହୁଛନ୍ତି ଋଷି ? ଯେଉଁ ରାଜପୁରୀରେ ଦାସଦାସୀମାନେ ସ୍ୱର୍ଗର ଦେବତାମାନଙ୍କଠୁଁ ବଳି ସୁଖରେ ଥାନ୍ତି, ସେଠି ପୁଣି କିଛି ନାହିଁ ?

ନାରଦ—ନା, କିଛି ନାହିଁ । ମାତ୍ର ଗୋଟିଏ ପଦାର୍ଥ ଏଠି ନାହିଁ ବୋଲି ଏହା ଅମରାବତୀ ସମକକ୍ଷ ନୁହେଁ ।

ନିଶୁମ୍ଭ—କଣ ସେ ପଦାର୍ଥ ?

—ଗୀତ—

ନାରଦ—ଉଚ୍ଚୈଃଶ୍ରବା ଐରାବତ
ରମ୍ଭାନାରୀ ପାରିଜାତ,
ଏ ସବୁର ପଦାର୍ଥ ବିନା—
ରାଜୁତି କି ଶୋଭା ପାଏ ? । ୧ ।

ନିଶୁମ୍ଭ—ଏସବୁ ତ ଇନ୍ଦ୍ରର ସମ୍ପତ୍ତି !
ନାରଦ—ଇନ୍ଦ୍ରପୁରୀ ତ ଏଠୁ ବେଶି ଦୂର ନୁହେଁ ?
ଶୁମ୍ଭ—ବେଶ୍, ଆମେ ଏଇ ମୁହୂର୍ତ୍ତରେ ସ୍ୱର୍ଗପୁରୀ ଆକ୍ରମଣ କରିବୁ ।
ନାରଦ—ସାଙ୍ଗେ ସାଙ୍ଗେ ଆକ୍ରମଣ ?
ନିଶୁମ୍ଭ—ଆପଣ ତା ହେଲେ କଣ କହୁଛନ୍ତି ?
ନାରଦ—ମୋର ଏଥିରେ କି ସ୍ୱାର୍ଥ ଅଛି ? ମୁଁ ବା କଣ କରିବି ? ତେବେ...

—ଗୀତ—

ଇନ୍ଦ୍ରକୁ ଚିଠାଉ ଲେଖ
ଦୂତ ପଠିଆଇ ଦେଖ,
ଦେବ ଜଣେ ନେବ ଜଣେ
ଏ ନାରଦର କିବା ଥାଏ । ୨ ।

ଶୁମ୍ଭ—ଆପଣଙ୍କ କଥା ମାନି ଆମେ ଇନ୍ଦ୍ରକୁ ଚିଠାଉ ଲେଖିବୁ ସତ, କିନ୍ତୁ ଇନ୍ଦ୍ର ଯଦି ଅସ୍ୱୀକାର କରେ ?
ନାରଦ—ଏ ମୁନିଟାକୁ ଅଡ଼ୁଆ ଭିତରକୁ ଟାଣୁଚ କାହିଁକି ବାବା ? ଗଲି ଅଇଲି—ଯା ସତ କଥା ତା କହିଲି ।

—ଗୀତ—

ତିନପୁରେ ମୋର ଗତି
କାହାକୁ ନ ଥାଏ ଭୀତି,
ସତ କଥା କହି କହି
ବିଷ୍ଣୁ ନାମ ଗାଇ ଗାଇ
ନାରଦ ବୀଣା ବଜାଏ । ୩ । (ପ୍ରସ୍ଥାନ)

ନିଶୁମ୍ଭ—ନାରଦ ମୁନି ତ ଚାଲିଗଲେ···

ଶୁମ୍ଭ—ତାଙ୍କର ଆଉ ରହିବା ପ୍ରୟୋଜନ କଣ ? ଆସ, ବର୍ତ୍ତମାନ ଇନ୍ଦ୍ର ନିକଟକୁ ପତ୍ର ଲେଖିବା ।

—ଗୀତ—

ଆଦ୍ୟେ ଶୁମ୍ଭ ନିଶୁମ୍ଭର ମାନ୍ୟ ହେ
ସୁରପୁରପତି ଇନ୍ଦ୍ର ଧେନ ହେ । ୧ ।
କୁଳବନ୍ତ ନତ୍ର ସମାଚାର ହେ
ଲେଖି ଜଣାଇଲୁ ଧାଡକାର ହେ । ୨ ।
ବ୍ରହ୍ମା-ବରେ ଯିଏ ମହାବୀର ହେ
ରୂପେ କୋଟି କନ୍ଦର୍ପ ସୁନ୍ଦର ହେ । ୩ ।
ସେହି ମହିଷା ଅସୁର ନାମେ ହେ
ଚାର ପଠାଇଲୁ ତୁମ ଧାମ ହେ । ୪ ।
ରମ୍ଭା ଅପ୍ସରା ପାରିଜାତ ହେ
ଉଚ୍ଚୈଃଶ୍ରବା ପୁଣି ଐରାବତ ହେ । ୫ ।
ତୁମ୍ଭେ ନୁହଁ ଏ ସବୁର ଯୋଗ୍ୟ ହେ
ଏହା ଅସୁର କୁଳର ଭୋଗ୍ୟ ହେ । ୬ ।

ଯେତେ ଏହି ଦ୍ରବ୍ୟ ରତ୍ନ ଗୋଟି ହେ
ଆମ ଚରଣରେ ଦିଅ ଭେଟି ହେ । ୭ ।
ଯେବେ ଇନ୍ଦ୍ର ପଦେ ଥାଏ ଆଶ ହେ
ଆଣ୍ଟ-ଘାଣ୍ଟ ଯେନ ବେଗେ ଆସ ହେ । ୮ ।,
ଏଠି ସର୍ବ କୁଶଳ ଆମ୍ଭର ହେ
ସୁଖେ ପାଳୁଚୁ ପ୍ରଜା ନିକର ହେ । ୯ ।
ତୁମ୍ଭ କୁଶଳକୁ ଦେବନାହା ହେ
ଘେନି ମହିଷା ଅସୁର ସାହା ହେ । ୧୦ ।

ଶୁମ୍ଭ—ଦୂତ !

ଦୂତ—ଆଜ୍ଞା, ମହାରାଜ !

ଶୁମ୍ଭ—ଆଖିର ପଲକେ ଅମରାବତୀ ଯାଇ ଇନ୍ଦ୍ରକୁ ଏ ଚିଠାଉ ଦିଅ ।

ନିଶୁମ୍ଭ—ଇନ୍ଦ୍ରକୁ କହିବ, ଯଦି ସେ ଆମ ଆଜ୍ଞାକୁ ଅବଜ୍ଞା କରେ, ତେବେ ତା ସ୍ଥାନରେ ଆଉ ଜଣେ ଇନ୍ଦ୍ର, ତା ସିଂହାସନରେ ବସିବ ।

ଦୂତ—ଯଥା ଆଜ୍ଞା ଦୈତ୍ୟରାଜ ! (ପ୍ରସ୍ଥାନ)

# ତୃତୀୟ ଦୃଶ୍ୟ

[ ଇନ୍ଦ୍ରପୁରୀ । ଦେବରାଜ ଇନ୍ଦ୍ର ସିଂହାସନରେ ଆସୀନ । ଯଥାସ୍ଥିତ ସଭାସଦ୍‌ଗଣ ଉପସ୍ଥିତ । ଅପ୍‌ସରାମାନଙ୍କର ନୃତ୍ୟ ଚାଲିଚି । ନୃତ୍ୟ ଶେଷ ହେଲା । ଅପ୍‌ସରାଗଣ ବିଦାୟ ନେଲେ । କିଛିକ୍ଷଣ ପରେ କୁଳବର୍ଣ୍ଣପାଟଣୀର ଦୂତ ଦେବସଭାରେ ପ୍ରବେଶ କଲା । ]

ଦୂତ—ଦେବାଧିଦେବ ଶଚୀପତି ଇନ୍ଦ୍ରଦେବଙ୍କର ଜୟ ହେଉ !
(ପ୍ରଣାମ କଲା)

ଇନ୍ଦ୍ର—କିଏ ତୁମ୍ହ ?

ଦୂତ—କୁଳବର୍ଣ୍ଣପାଟଣୀର ଦୂତ । ଚିଠାଉ ଆଣିଚି ।

ଇନ୍ଦ୍ର—ଚିଠାଉ ? ଦେଖେଁ । (ପଢ଼ି) କଣ ? ସାମାନ୍ୟ ଦୈତ୍ୟ ପୁଣି ଚାହେଁ ଅଧିକାର କରିବ ମୋର ଐରାବତ ହସ୍ତୀ, ଉଚ୍ଚୈଃଶ୍ରବା ଅଶ୍ୱ, ପାରିଜାତ ଫୁଲ ଆଉ ଅପ୍‌ସରା ରମ୍ଭାକୁ !

ଦୂତ—ଦାନବକୁଳତିଳକ ମହିଷାସୁର ଆଉ ଶୁମ୍ଭ ନିଶୁମ୍ଭଙ୍କୁ ଆପଣ ସାମାନ୍ୟ ମଣନ୍ତୁ ନାହିଁ ଦେବରାଜ !

ଇନ୍ଦ୍ର—କଣ କହିଲୁ ନିର୍ବୋଧ ? ସାମାନ୍ୟ ମଣିବ ନାହିଁ—କଣ ତାଙ୍କ ପାଦରେ ନେଇ ଭେଟି ଦେବ ? କିଏ ଅଛୁ ଅଙ୍ଗାରପନ୍ନଗ—

ପନ୍ନଗ—ଆଦେଶ କରନ୍ତୁ ପ୍ରଭୁ !

ଇନ୍ଦ୍ର—ଏଇ ମୁହୂର୍ତ୍ତରେ ଏ ଦୂତଟାକୁ ନେଇ ହତ୍ୟା କର । ଦେଖିବ, କୋଉ ମହିଷାସୁର ଆସି ରକ୍ଷା କରିବ—ଯାଅ ।
(ସଭାର ଏକ ପ୍ରାନ୍ତରେ ଅଙ୍ଗାରପନ୍ନଗ ଦୂତକୁ ହତ୍ୟା କଲା)

ଇନ୍ଦ୍ର—ହାଃ-ହାଃ-ହାଃ ! ଥାଟପାଟ ନେଇ ଇନ୍ଦ୍ର ଯିବ ଶୁମ୍ଭର ଦୈତ୍ୟ-
ଗୁଡ଼ାଙ୍କର ପାଦପୂଜା କରିବାକୁ—ନା ! ମୋର କୁଶଳକୁ
ପୁଣି ମହିଷାସୁର ସାହା !

( ଦେବର୍ଷି ନାରଦଙ୍କର ପ୍ରବେଶ )

ନାରଦ—ନାରାୟଣ···ନାରାୟଣ !
ଇନ୍ଦ୍ର—ଦେବର୍ଷି, ଏ ଅସମୟରେ ଯେ ?
ନାରଦ—ସମୟ ଅସମୟର ଭେଦଭାବ ତ ମୋ ନିକଟରେ ନଥାଏ
ଦେବରାଜ ! ସେଥିପାଇଁ ଏ କୁସମୟରେ ମଧ୍ୟ ମୁଁ ଇନ୍ଦ୍ର-
ସଭାରେ ଉପସ୍ଥିତ ହୋଇଛି ।
ଇନ୍ଦ୍ର—କୁ-ସମୟ । ଏ କଥା କାହିଁକି କହୁଛନ୍ତି ଦେବର୍ଷି ନାରଦ ?

—ଗୀତ—

ନାରଦ—ଶୁମ୍ଭ ନିଶୁମ୍ଭ ଶିବିରୁ ଆସିଲା ଯେ ଦୂତ,
ଇନ୍ଦ୍ର—ଅଙ୍ଗାରପନ୍ଥା ଅସ୍ତ୍ରେ ହୋଇଲାଣି ସେ ହତ । ୧ ।
ନାରଦ—ଦୂତକୁ କରିବ ହତ୍ୟା ନହୁଏ ପ୍ରତ୍ୟୟ,
ଇନ୍ଦ୍ର—ଏଇ ଦେଖ ପଡ଼ିଅଛି ଦୁଷ୍ଟ ମୃତ ଦେହ । ୨ ।
ନାରଦ—ଦୂତଠାରେ ଥାଏ କିବା ଦୁଷ୍ଟଇଷ୍ଟ ଭାବ ?
ଇନ୍ଦ୍ର—ଅସୁରଜନମ ଯେଣୁ, ଅସୁର ସ୍ୱଭାବ । ୩ ।
ନାରଦ—ଅତି ପରାକ୍ରମୀ ସେଇ ଶୁମ୍ଭ ଓ ନିଶୁମ୍ଭ,
ଇନ୍ଦ୍ର—ଏଇ ମୋର ବଜ୍ରାଘାତେ ତୁଟିଯିବ ଦମ୍ଭ । ୪ ।
ନାରଦ—ଏଥିକୁ ଅଛଇ ପୁଣି ଦାନବ ମହିଷା,
ଇନ୍ଦ୍ର—ସହି ନପାରିବ ଖଣେ କୁଳିଶ ବରଷା । ୫ ।

ନାରଦ—ଅନର୍ଥ ଘଟିବ ନଷ୍ଟେ ଲାଗେ ମୋ ସନ୍ଦେହ,
ଇନ୍ଦ୍ର—ଦେବରାଜ ଇନ୍ଦ୍ର ମୁହିଁ ନାହିଁ ତାଳେ ଭୟ । ୭ ।

ନାରଦ—ନାରାୟଣ...ନାରାୟଣ ! ମତେ ତେବେ ବିଦାୟ ଦିଅନ୍ତୁ ଶଚୀପତି !

ଇନ୍ଦ୍ର—ଯା'ନ୍ତୁ ଦେବର୍ଷି ! ଆପଣ ଅଚିରେ ଦେଖିବେ, ମୋର ଏଇ ବଜ୍ରାଘାତରେ ଶୁମ୍ଭ, ନିଶୁମ୍ଭ ଓ ମହିଷାର ଦର୍ପ ଚୂର୍ଣ୍ଣ ହୋଇଛି ।

ନାରଦ—ନାରାୟଣ...ନାରାୟଣ ! (ପ୍ରସ୍ଥାନ)

# ଚତୁର୍ଥ ଦୃଶ୍ୟ

[ ମହିଷାସୁରର ରାଜଧାନୀ ଜେନାବର୍ଲୀପୁର । ଇନ୍ଦ୍ରସଭାରେ ଦାନବ-ଦୂତର ହତ୍ୟା ସମ୍ବାଦ ଶୁଣି ମହିଷାସୁରର ସର୍ବାଙ୍ଗ କୋପାନଳରେ ଜର୍ଜରିତ । ]

ମହିଷା—କଣ ? କଣ କହିଲ ମନ୍ତ୍ରୀ ଅନ୍ଧକ ! ମୋର ନାମାଙ୍କିତ ପତ୍ର ନେଇ ଶୁମ୍ଭ ନିଶୁମ୍ଭର ଯେଉଁ ଦୂତ ଯାଇଥିଲା, ତାକୁ ଇନ୍ଦ୍ର ହତ୍ୟା କରିଛି ?

ମନ୍ତ୍ରୀ—ହଁ ମହାରାଜ ! ମୋର ଦିବ୍ୟଚକ୍ଷୁ ବଳରେ ମୁଁ ଜାଣିପାରୁଛି, ଇନ୍ଦ୍ରର ଆଦେଶରେ ଅଙ୍ଗାରପନ୍ନଗ ଆମ ଦୂତକୁ ହତ୍ୟା କରିଛି ।

ମହିଷା—ମୂଢ଼ ଇନ୍ଦ୍ର ! ତୁ ରାଜସିଂହାସନରେ ବସିବାର ଯୋଗ୍ୟ ନୋହୁ । ରାଜୋଚିତ ଧର୍ମ କର୍ମ, ମିତ୍ର ଅମିତ୍ରର ଜ୍ଞାନ ତୋର ନାହିଁ । ସେଥିପାଇଁ ତୁ ବାର୍ତ୍ତାବହ ଦୂତକୁ ହତ୍ୟା କରିଛୁ । ...ଏବେ ଜାଣିରଖ ମୂର୍ଖ—ଦୂତକୁ ହତ୍ୟା କରି ଦେବ-ଦାନବ ମଧ୍ୟରେ ଯେଉଁ କଳହର ସୂତ୍ରପାତ ତୁ କଲୁ, ତାହାହିଁ ଦେବକୁଳ ବିଲୋପର କାରଣ ହେବ ! ...କିଏ ଅଛୁ ?

(ପ୍ରହରୀର ପ୍ରବେଶ)

ପ୍ରହରୀ—ଆଦେଶ ଦୈତ୍ୟରାଜ !

ମହିଷା—ଶୁମ୍ଭ ନିଶୁମ୍ଭକୁ ସମ୍ବାଦ ଦିଅ—ସେମାନେ ଏଇ ମୁହୂର୍ତ୍ତରେ ଦଳବଳ ସହ ସ୍ୱର୍ଗପୁର ଆକ୍ରମଣ କରି ଇନ୍ଦ୍ରପଦ ଲୋପ କରନ୍ତୁ—ରମ୍ଭା, ଉର୍ବଶୀ, ମେନକା ଆଦି ଅପ୍ସରାଙ୍କୁ ବନ୍ଦୀକରି ହାତକଡ଼ି ଲଗାଇ ଦାନବପୁରକୁ ଆଣନ୍ତୁ—ଆଉ ନନ୍ଦନକାନନର ମୂଳୋତ୍ପାଟନ କରି ନର୍କକୁଣ୍ଡରେ ନିକ୍ଷେପ କରନ୍ତୁ—ଯାଅ (ପ୍ରହରୀର ପ୍ରସ୍ଥାନ)

# ପଞ୍ଚମ ଦୃଶ୍ୟ

[ ସ୍ୱର୍ଗପୁରୀ । ଶୁମ୍ଭ ନିଶୁମ୍ଭ ଦୈତ୍ୟବାହିନୀ ସହିତ ପ୍ରବେଶ କଲେ । ]

ଶୁମ୍ଭ—କାହିଁ—କାହିଁ ଅଛି ସେ ନିର୍ଲଜ୍ଜ କାପୁରୁଷ ଇନ୍ଦ୍ର ?

ନିଶୁମ୍ଭ—ଆମ ଦୂତକୁ ହତ୍ୟା କରି କୋଉଠି ଆତ୍ମଗୋପନ କରିଛି ।

( ଅନ୍ୟ ଦିଗରୁ ଇନ୍ଦ୍ର ପ୍ରବେଶ କଲେ )

ଇନ୍ଦ୍ର—ସାବଧାନ ! ସାବଧାନ ମୂଢ଼ ଦୈତ୍ୟ ! ଆଉ ପଦେ ଅଗ୍ରସର ହେଲେ ତୁମ ଦୂତର ଦୁର୍ଦ୍ଦଶା ତୁମେ ଦୁହେଁ ଭୋଗିବ ।

ଶୁମ୍ଭ--ସେ ପରୀକ୍ଷାର ବେଳ ନିକଟ ହୋଇ ଆସୁଛି । ତା ପୂର୍ବରୁ ମୁଁ ପୁଣି ତୋତେ ପଚାରୁଛି—ଆମ ପତ୍ରଲେଖା ଗୃହ ପଦାର୍ଥ ଦେବୁ ନା ନାହିଁ ?

ଇନ୍ଦ୍ର—ତା'ର ଉତ୍ତର ଦେବ ମୋ' ହାତର ଏଇ ବଜ୍ର ।

—ଗୀତ—

ଦାନବକୁଳ ଅଧମରେ ଶୁମ୍ଭ ନିଶୁମ୍ଭ
ଏଇ ବଜ୍ରାଘାତେ ଭାଙ୍ଗିଯିବ ସବୁ ଦମ୍ଭ,
ଯେବେ ପ୍ରାଣେ ଆଶ ରେ,
ଫେରିଯା—ଫେରିଯା ନିଜ ବାସ ରେ । ୧ ।

ଶୁମ୍ଭ— ନାମ ବହିଅଛୁ ପରା ଦେବ ସୁନାସୀର,
ସେ ଶିରେ ନ ରଖି ପାଦ ଫେରିବୁ କି ଘର,
ଦାନ୍ତେ ତୃଣ ଧରି ରେ,
ହେବୁ ଏବେ ଆମ ସେବାକାରୀ ରେ । ୨ ।

ଇନ୍ଦ୍ର—ନାଃ ! ଆଉ ନୁହେଁ । ତୁମ ଦୁହିଁଙ୍କର ଅନ୍ତିମ ସମୟ ନିକଟ ହୋଇଆସିଲାଣି ।

—ଗୀତ—

କାଲ ଯେଉଁ ଖଳ ବୁଦ୍ଧି, ଫଳ ତାର ଭୋଗ,
ଇନ୍ଦ୍ର ସଭା ତଳେ ତୁମ ଥିଲା ମୃତ୍ୟୁ ଯୋଗ,
ଏବେ ଇଷ୍ଟ ସ୍ମର ରେ,
ଯମପୁର ନୁହେଁ ବେଶୀ ଦୂର ରେ । ୩ ।

ଶୁମ୍ଭ—ଜାଣୁ ଆମେ, ଏଠୁ ଯମପୁର ଦୂର ନୁହେଁ—ମାତ୍ର ଆଜ ଏ ଅମରପୁରୀରେ ଯମରାଜାର ମଧ୍ୟ ସ୍ଥାନ ରହିବ ନାହିଁ ।

ଇନ୍ଦ୍ର—ବେଶ୍ ! ଶକ୍ତି ପରୀକ୍ଷା ପାଇଁ ମୁଁ ମଧ୍ୟ ପ୍ରସ୍ତୁତ ।

ନିଶୁମ୍ଭ—ଦୈତ୍ୟଗଣ ! କର କର ଆକ୍ରମଣ ।

[ ଏକ ପକ୍ଷରେ ଶୁମ୍ଭ-ନିଶୁମ୍ଭ ଓ ସେମାନଙ୍କ ସୈନ୍ୟଗଣ ଏବଂ ଅନ୍ୟ ପକ୍ଷରେ ଇନ୍ଦ୍ର ଓ ଦେବଗଣଙ୍କ ମଧ୍ୟରେ ଯୁଦ୍ଧ । ଯୁଦ୍ଧରେ ଇନ୍ଦ୍ର ଓ ଦେବଗଣଙ୍କ ପରାଜୟ ଓ ପଳାୟନ । ]

ଶୁମ୍ଭ, ନିଶୁମ୍ଭ—ହାଃ-ହାଃ-ହାଃ······

ଶୁମ୍ଭ—ଦେଖ, ଦେଖ ନିଶୁମ୍ଭ ! ଯୁଦ୍ଧରେ ପରାଜିତ ହୋଇ ଦେବଗଣ ସହ ଇନ୍ଦ୍ର କିପରି ପଳାୟନ କରୁଛି—ହାଃ-ହାଃ !

ନିଶୁମ୍ଭ—ଏଇ, ଏଣେ ଦେଖ—କୁବେର ତାର ସମସ୍ତ ଧନ ସମ୍ପତ୍ତି ଛାଡ଼ି ପ୍ରାଣବିକଳରେ ପଳାଇଯାଉଛି—ହାଃ-ହାଃ !

ଶୁମ୍ଭ—ଦୈତ୍ୟଗଣଙ୍କୁ ଆଦେଶ ଦିଅ—କୁବେରର ଧନ ସମ୍ପତ୍ତି ଆଣି ଆମ ପାଦତଳେ ଠୁଳ କରନ୍ତୁ ।

( ଦୂତର ପ୍ରବେଶ )

ଦୂତ—ଦୈତ୍ୟରାଜଙ୍କର ଜୟ ହେଉ !

ଶୁମ୍ଭ—କି ସମ୍ବାଦ ଦୂତ ?

ଦୂତ—ଦାନବଶ୍ରେଷ୍ଠ ମହିଷାସୁର ସ୍ୱର୍ଗପୁରୀକୁ ବିଜେ କରୁଛନ୍ତି ।

ଶୁମ୍ଭ—ଆମେ ତ ତାଙ୍କୁ ହିଁ ଅପେକ୍ଷା କରିଥିଲୁ । (ମହିଷାର ପ୍ରବେଶ) ଏଇ ତ, ଆସିଗଲେଣି !

ମହିଷା—ଧନ୍ୟ, ଧନ୍ୟ ଦୈତ୍ୟବୀର ଶୁମ୍ଭ-ନିଶୁମ୍ଭ ! ତୁମେ ଦୁହେଁ ଦୈତ୍ୟକୁଳର ମୁଖ ଉଜ୍ଜ୍ୱଳ କରିଛ ।

ଶୁମ୍ଭ—କେବଳ ଆପଣଙ୍କ ନାମ ସ୍ମରଣ କରି ଆମେ ଇନ୍ଦ୍ରକୁ ଯୁଦ୍ଧରେ ପରାସ୍ତ କରିଛୁ । ଆପଣ ଏ ଇନ୍ଦ୍ର-ସିଂହାସନର ଅଧିକାରୀ ।

ନିଶୁମ୍ଭ—ଏଇ ସିଂହାସନରେ ଉପବେଶନ କରନ୍ତୁ ଦୈତ୍ୟରାଜ । ବାସବର ଏଇ ଅଷ୍ଟନିଧି—ଅଷ୍ଟ ଅଳଙ୍କାର ପିନ୍ଧାଇ ଆପଣଙ୍କର ଅଭିଷେକ ପୂଜା ଆମେ କରିବୁ ।

ମହିଷା—ମୋର ଅଭିଷେକ ହେବ ସତ, କିନ୍ତୁ ଆଜିଠାରୁ ଏ ସ୍ୱର୍ଗଧାମର ପାଳକ ହେବ ତୁମେ ଦୁହେଁ । ଆଜିଠାରୁ ଦେବଗଣ ହେବେ ଆମର ଦାସାନୁଦାସ । ହାତ ଗୋଡ଼ରେ ବେଡ଼ି ପକାଇ ସେମାନଙ୍କୁ ରଖିବ । ଆସନରେ ବସିବେ ନାହିଁ, ଶଯ୍ୟାରେ ଶୟନ କରିବେ ନାହିଁ । ହୀନ, ଘୃଣ୍ୟ, ନୀଚ, ଚଣ୍ଡାଳର ଅବସ୍ଥା ସେମାନେ ଭୋଗିବେ ।

ଶୁମ୍ଭ—ଦୈତ୍ୟରାଜଙ୍କର ଆଦେଶ ଅକ୍ଷରେ ଅକ୍ଷରେ ପାଳିତ ହେବ । ଜୟ ସ୍ୱର୍ଗବିଜୟୀ ଦାନବକୁଳତିଳକ ବୀରାଧିବୀରବର ମହା-ପ୍ରତାପୀ ମହିଷାସୁରଙ୍କ ଜୟ !

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ଗୋଲୋକପୁରୀ । ଗଜଦନ୍ତ ପଲଙ୍କରେ ଭଗବାନ ବିଷ୍ଣୁ ଆସୀନ । ଦୈତ୍ୟମାନଙ୍କଦ୍ୱାରା ସ୍ୱର୍ଗପୁରୀରୁ ବିତାଡ଼ିତ ଦେବଗଣ ବିଷଣ୍ଣ ବଦନରେ ବିଷ୍ଣୁଙ୍କ ସମ୍ମୁଖରେ ଉପସ୍ଥିତ । ]

ବିଷ୍ଣୁ—ଇଏ କି ବିଚିତ୍ର ଦୃଶ୍ୟ ଆଜି ମୁଁ ଦେଖୁଛି ! ଅଳକାପୁରୀ ଶୂନ୍ୟ କରି ଦେବଗଣ ମୋ ପୁରରେ ଉପସ୍ଥିତ କାହିଁକି ? ପିତାମହ ବ୍ରହ୍ମା – ଦେବରାଜ ଇନ୍ଦ୍ର – ସମସ୍ତଙ୍କ ମୁହଁ ବିରସ – ନିରାନନ୍ଦ ! କଣ ହୋଇଛି ?

—ଗୀତ—

କୁହ ଦେବଗଣ କି'ବା ଅଳକା ସମ୍ବାଦ ହେ ।
କି କାରଣେ ଘାରିଅଛି ଏ ଘୋର ବିଷାଦ ହେ ? । ପଦ ।
ଅରୁଣ ବରୁଣ ଚନ୍ଦ୍ର,
ଛନ୍ତି ଯହିଁ ଦେବ ଇନ୍ଦ୍ର,
କୁବେର ସମ୍ପଦ ଥାଇ, ସାଧିଲା କେ ବାଦ ହେ ? । ୧ ।
ପାରିଜାତ ଫୁଲ ବାସ,
ରମ୍ଭା ମେନକାର ହସ,
ଅମୃତର ସ୍ୱାଦେ ପୁଣି, କିବା ଅବସାଦ ହେ । ୨ ।

ପ୍ରଥମ ଦେବତା—ଅନ୍ତର୍ଯାମୀ ପ୍ରଭୁ ଗୋଲୋକବିହାରୀଙ୍କୁ କେଉଁ କଥା ଅଜଣା ଯେ ପ୍ରଭୁ ଆମ ସହିତ ଏ ଛଳନା କରୁଛନ୍ତି ?

ଦ୍ୱିତୀୟ ଦେବତା—ଶୁମ୍ଭ, ନିଶୁମ୍ଭ ଆଉ ମହିଷାସୁରର ଅତ୍ୟାଚାରରୁ ଆମର ସ୍ୱର୍ଗପୁରୀରେ ଆଉ ସ୍ଥାନ ନାହିଁ ପ୍ରଭୁ !

ବିଷ୍ଣୁ—ଦେବରାଜ ଇନ୍ଦ୍ର, ଇଏ କଣ ମୁଁ ଶୁଣୁଛି ?

ଇନ୍ଦ୍ର—ସେମାନଙ୍କ ସହ ଯୁଦ୍ଧରେ ପରାଜିତ ହୋଇ ମୁଁ ଅଳକାପୁରୀରୁ ବିତାଡ଼ିତ । ମୋର ଇନ୍ଦ୍ରପଦ ଆଉ ନାହିଁ ।

ବିଷ୍ଣୁ—ପିତାମହ ବ୍ରହ୍ମା ?

ବ୍ରହ୍ମା—ମୋହରି ବରରେ ବଳୀୟାନ୍ ହୋଇ ସେମାନେ ମୋ ବାସ-ଭୂମିରୁ ସୁଦ୍ଧା ମତେ ବିତାଡ଼ିତ କରିଛନ୍ତି ।

ବିଷ୍ଣୁ—ଧନପତି କୁବେର ?

କୁବେର—ମୋ ଧନର କାଣିଚାଏ ସୁଦ୍ଧା ଆଉ ମୋ' ପାଖରେ ନାହିଁ । ସବୁ ସେମାନେ ଅପହରଣ କରି ନେଇଛନ୍ତି ।

ବିଷ୍ଣୁ—ବାୟୁଦେବ ମରୁତ ?

ମରୁତ—ବାୟୁର ଗତି ଥିଲି ବୋଲି ପଳାଇ ଆସି ପାରିଲି । ତା' ନ ହେଲେ ଦାନ୍ତରେ ତୃଣ ଧରି ଅସୁରମାନଙ୍କୁ ମୁଣ୍ଡିଆ ମାରୁଥାଆନ୍ତି ।

ବିଷ୍ଣୁ—ଏ ବଡ଼ମ୍ବନା—ଏ ଅଘଟଣ କଥା ତ ମୁ ଚିନ୍ତା କରି ପାରୁ ନାହିଁ !

—ଗୀତ—

ସବୁରି ରକ୍ଷକ ଯିଏ
ତାକୁ ବା ରଖିବ କିଏ ?
ଦେବ ଶୂନ୍ୟ ଦେବଭୂମି ବଡ଼ ପରମାଦ ହେ । ୩ ।

ପ୍ରଥମ ଦେବତା—ଆଉ ଛଳନା କରନ୍ତୁ ନାହିଁ ପ୍ରଭୁ ! ଆପଣ ହିଁ ଦେବକୁଳକୁ ରକ୍ଷା କରିବେ ।

ବିଷ୍ଣୁ—କିନ୍ତୁ ପିତାମହଙ୍କ ବରରେ ସେମାନେ ଯେ ଅମରତ୍ୱ ଲାଭ କରିଛନ୍ତି !!

ବ୍ରହ୍ମା—ହଁ କମଳାପତି, ମୁଁ ସେମାନଙ୍କୁ ଅମର ବର ପ୍ରଦାନ କରିଛି ।

ଇନ୍ଦ୍ର—କିନ୍ତୁ କାହିଁକି, କାହିଁକି ଆପଣ ଏଭଳି ମାରାତ୍ମକ ବର ପ୍ରଦାନ କଲେ ? ଏ ଭୁଲ ଆପଣ କଲେ କାହିଁକି ?

ବ୍ରହ୍ମା—ଏବେ ମତେ ତୁମେ ଦୋଷ ଦେଉଚ ଇନ୍ଦ୍ର ! କିନ୍ତୁ ଯୁଗ ଯୁଗ ବ୍ୟାପି ସେମାନଙ୍କର କଠୋର ତପସ୍ୟା ଦେଖି ତୁମେ ନିଜେ ଭୟ କଲ ଯେ ତୁମ ଇନ୍ଦ୍ରପଦ ଟଳିଯିବ—କୁବେର ଭୟ କଲେ ଯେ ତାଙ୍କ ସମ୍ପତ୍ତି ସେ ହରାଇ ବସିବେ...

ପ୍ରଥମ ଦେବତା—ଆଉ ସେଥିପାଇଁ ଆପଣ ଏମିତି ବର ଦେଲେ ଯେ ଆପଣ ନିଜେ ମଥା ଗୁଞ୍ଜିବାକୁ ସ୍ଥାନ ଟିକଏ ପାଉ ନାହାନ୍ତି ।

ଦ୍ୱିତୀୟ ଦେବତା—ସେମାନଙ୍କର ମୃତ୍ୟୁଭେଦ କଥା ସେମାନଙ୍କୁ କହିଥିବେ ତ ?

ବ୍ରହ୍ମା—କହିଥିଲି । କିନ୍ତୁ ଏବେ ତାହା ମୋର ଆଉ ସ୍ମରଣ ନାହିଁ ।

ବିଷ୍ଣୁ—ତା ହେଲେ ଉପାୟ ?

(ନାରଦଙ୍କର ପ୍ରବେଶ)

ନାରଦ—ନାରାୟଣ, ନାରାୟଣ...

ବିଷ୍ଣୁ—ଦେବର୍ଷି ନାରଦ !

ନାରଦ—ଦେବତାଙ୍କର ସିନା ସ୍ମରଣ ନାହିଁ—ଏ ଦେବର୍ଷିର କିନ୍ତୁ ସ୍ମରଣ ଅଛି ।

—ଗୀତ—

ଏକ ହାତ ଅନ୍ୟ ଶିରେ
ଶୁମ୍ଭ ନିଶୁମ୍ଭ ରଖିଲେ
ହେବେ ହତ, ମହିଷାର ନାରୀ ମୃତ୍ୟୁ ଭେଦ ଏ,
ଶୁଣ ଶ୍ରୀ କମଳାପତି ଦାନବ ସମ୍ବାଦ ହେ,
ମେଲିଣି ମାଗୁଛି ଏବେ ସ୍ବାମୀରୁ ନାରଦ ହେ । ୪ ।

ନାରଦ—ନାରାୟଣ···ନାରାୟଣ··· (ପ୍ରସ୍ଥାନ)

ବ୍ରହ୍ମା—ଦେବର୍ଷି ଠିକ୍ କଥା କହିଗଲେ । ଜଣେ ଅନ୍ୟ ଜଣକର ଶିରରେ କର ରଖିଲେ ଶୁମ୍ଭ ନିଶୁମ୍ଭର ମୃତ୍ୟୁ ହେବ । ଆଉ ମହିଷାସୁରର ମୃତ୍ୟୁ ହେବ କେବଳ ଜଣେ ନାରୀ ହାତରେ ।

ଇନ୍ଦ୍ର—କିନ୍ତୁ କିଏ ସେହି ନାରୀ ?

ବିଷ୍ଣୁ—ଆଚ୍ଛା, ଆସନ୍ତୁ ଦେବଗଣ—ଏଇ ମେରୁ ପର୍ବତ ଉପରେ ବସି ମହିଷାସୁର ବିନାଶର ଉପାୟ ଚିନ୍ତା କରିବା ।

ଦେବଗଣ—ଜୟ ଦୁରିତନାଶନ ପ୍ରଭୁ ଭଗବାନ ବିଷ୍ଣୁଙ୍କର ଜୟ !

(ଏହି ସମୟରେ ଶୂନ୍ୟ ପଥରେ ଭାସି ଆସିଲା ମହିଷାର ଅଟ୍ଟହାସ୍ୟ ଓ କଥାର ସ୍ବର । )

ମହିଷା—ହାଃ-ହାଃ-ହାଃ ! ନିର୍ବୋଧ···ନିର୍ବୋଧ ଏଇ ଦେବଗଣ ! ତା ନହେଲେ ମହିଷାସୁରର ମୃତ୍ୟୁ ଉପାୟ ଚିନ୍ତା କରିବାକୁ ଏମାନେ ସାହସ କରନ୍ତେ !! ଆରେ ଆରେ ହୀନମତି, ହୀନ-ବୀର୍ଯ୍ୟ ଦେବଗଣ ! ଯେଉଁ ମେରୁ ଶିଖରରେ ବସି ତୁମେମାନେ ମନ୍ତ୍ରଣା କରୁଚ ଦେଖ, ମୋର ଶରାଘାତରେ ଏବେ ସେ ମେରୁର ମୂଳୋତ୍ପାଟନ ମୁଁ କରୁଚି । ହାଃ-ହାଃ-ହାଃ··

ବିଷ୍ଣୁ—ଏ କଣ ହେଲା ପିତାମହ ? ଗିରିରାଜ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡ଼ୁଛି !!

ବ୍ରହ୍ମା—ମହିଷାସୁରର ଆଘାତ ସହି ନ ପାରି ଗିରିରାଜର ପାଷାଣ ବକ୍ଷ ମଧ୍ୟ ଫାଟିପଡ଼ୁଛି ।

ପ୍ରଥମ ଦେବତା—ଦେଖୁଛନ୍ତି ତ ପ୍ରଭୁ ମହିଷାର ପ୍ରକୋପ ?

ଦ୍ୱିତୀୟ ଦେବତା—ଏବେ କୁହନ୍ତୁ, ଆମର ସ୍ଥାନ କେଉଁଠି ?

ବିଷ୍ଣୁ—ନାଃ, ଆଉ ନୁହେଁ । ମହିଷାସୁରର ଜୀବନ ନାଟିକା ଶେଷ ହୋଇ ଆସିଲାଣି । ମୂର୍ଖ, ମତେ ମଧ୍ୟ ଅବଜ୍ଞା କରୁଛି !!

ଇନ୍ଦ୍ର—ଜାଣେ ନାହିଁ ସେ, ପ୍ରଭୁ ଚକ୍ରଧାରୀ କୋପ କଲେ ଏ ଚରାଚର ବିଶ୍ୱ ଜଳି ଭସ୍ମ ହୋଇଯିବ !

# ଦ୍ୱିତୀୟ ଦୃଶ୍ୟ

[ ଜେନାବଳୀପୁର, ଉପସ୍ଥିତ ମହୀଷା ଓ ମନ୍ତ୍ରୀ ]

ମହୀଷା — ହାଃ-ହାଃ-ହାଃ —

ମନ୍ତ୍ରୀ — ଦେଖୁଛନ୍ତ ମହାରାଜ — ଦେଖୁଛନ୍ତ !

ମହୀଷା — ଦେଖୁଛ ମହାମନ୍ତ୍ରୀ—ମୋର ଶରାଘାତରେ ମେରୁ ପର୍ବତ କପରି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡ଼ୁଛ । ଦେଖୁଛ ମୁଁ ତେତିଶ କୋଟି ଦେବଦେବୀଙ୍କର ନରକ-ଯନ୍ତ୍ରଣା ଭୋଗ । ହାଃ-ହାଃ···

ମନ୍ତ୍ରୀ—ଆଉ ସେଇ ସାଙ୍ଗେ ସାଙ୍ଗେ ଦେଖନ୍ତୁ — ଦେବଗଣଙ୍କ କୋପ ଫଳରେ କପରି ବ୍ରହ୍ମ ଅଗ୍ନି, ବିଷ୍ଣୁ ଅଗ୍ନି, ରୁଦ୍ର ଅଗ୍ନି ପିଙ୍ଗଳ ବର୍ଣ୍ଣ ଧାରଣ କରି ମହାଶୂନ୍ୟରେ ଧ୍ରୁବଲୋକ ପର୍ଯ୍ୟନ୍ତ ବ୍ୟାପି ଗଲାଣି !

ମହୀଷା —ସେଥିପାଇଁ ମୁଁ ସ୍ୱର ଦେବତାଙ୍କୁ ଭୟ କରିବ ? ରେ ରେ ମୂର୍ଖ ଦେବଗଣ, ତୁମେ କଣ ଜାଣ ନାହିଁ ମୋର ପ୍ରତିଜ୍ଞା— ମୋର ପ୍ରତାପ !

—ଗୀତ—

କହିଛି ମୁଁ ପରା ଆରେ ଦେବଗଣ
ତ୍ରିପୁରେ ରଖିବି ଦେବନାହିଁ
ସରିଗଲା ତୁମ ଦେବ ଭୋଗ ଆଉ
ଅମୃତ ଚଖେଇ ଦେବ ନାହିଁ । ୦ ।

ଐରାବତ ହସ୍ତୀ ଜଳରେ ବୁଡ଼ିବ
ଉଚ୍ଚୈଃଶ୍ରବା ଅଶ୍ୱ ଅନଳେ ପୋଡ଼ିବ,
ଇନ୍ଦ୍ରାଣୀ ଗଳାରେ ପାରିଜାତ ହାର
ଆଉ ମୁଁ ପିନ୍ଧାଇ ଦେବ ନାହିଁ । ୧ ।

ମନ୍ତ୍ରୀ—ଆପଣ ଟିକିଏ ଧୀର ସ୍ଥିର ହୋଇ ବିଚାର କରନ୍ତୁ ଦୈତ୍ୟରାଜ—ଆପଣଙ୍କ ବରଦାତା ବ୍ରହ୍ମାଙ୍କ କଥା ଭାବନ୍ତୁ ।

ମହିଷା—ମୋର ବରଦାତା ହୋଇ ଯିଏ ମୋ ମରଣ କାମନା କରୁଚି, ମୁଁ ପୁଣି ତା କଥା ଚିନ୍ତା କରିବ ? ମୋର ମନ୍ତ୍ରୀ ହୋଇ ଏ ଉପଦେଶ ମତେ ଦେଉଚ ?

—ଗୀତ—

ବ୍ରହ୍ମାପୁର ଦେବ ମାଟିରେ ମିଶାଇ
ଇନ୍ଦ୍ର କରୁ ବଜ୍ର ଦେବ ମୁଁ ଖସାଇ,
କ୍ଷୀରାବ୍ଧି କୋଳରେ ବିଷ୍ଣୁ ଗଜଦନ୍ତ-
ପଲଙ୍କ ପକାଇ ଦେବ ନାହିଁ । ୨ ।
ଇନ୍ଦ୍ର ପତ୍ନୀ ହେବ ମୋ ଅଙ୍କଶାୟିନୀ,
ପାଦ ପଖାଳିବ ଲକ୍ଷ୍ମୀ ଠାକୁରାଣୀ,
ସୁଧର୍ମା ସଭାରେ ରମ୍ଭା, ମେନକାର,
ନୃତ୍ୟ ମୁଁ କରାଇ ଦେବ ନାହିଁ । ୩ ।

ମନ୍ତ୍ରୀ—ଦେଖନ୍ତୁ ମହାରାଜ, ଦେବଗଣଙ୍କ ସହ ଅଗ୍ନିଦେବ କ୍ରୋଧରେ ଜର୍ଜରିତ ହୋଇ କପଟ ରକ୍ତଜବା ଆକାର ଧାରଣ କଲେଣି !

ମହିଷା—ମୁଁ ସେଥିକି ଭ୍ରୂକ୍ଷେପ କରେନା ମନ୍ତ୍ରି ! ତୁମେ ଆସ ।
(ଦୁହିଁଙ୍କର ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

[ ମେରୁ ଶିଖର—ଉପସ୍ଥିତ ବିଷ୍ଣୁଙ୍କ ସହ ଦେବଗଣ । ସମସ୍ତଙ୍କ ଦୃଷ୍ଟି ଅଦୂରସ୍ଥ ଅଗ୍ନି ଶିଖାରେ ନିବଦ୍ଧ । ]

ବ୍ରହ୍ମା—ଦେଖନ୍ତୁ ହେ ଚକ୍ରଧର—ଅଗ୍ନିଦେବଙ୍କର ଏଇ ପ୍ରଚଣ୍ଡ ତେଜ !

ଇନ୍ଦ୍ର—ଆଉ କ୍ଷଣକାଳ ପରେ ଏଇ ଅଗ୍ନିଶିଖା ଯେପରି ବିଶ୍ୱ ବ୍ରହ୍ମାଣ୍ଡକୁ ବ୍ୟାପିଯିବ !

ପ୍ରଥମ ଦେବତା—ତେବେ ତ ଏ ସୃଷ୍ଟି ଲୋପ ପାଇଯିବ ପ୍ରଭୁ !

ବିଷ୍ଣୁ—ନା, ଲୋପ ହେବ ନାହିଁ ଦେବଗଣ ! ସୃଷ୍ଟି ରକ୍ଷା ପାଇବ । ଏଇ ଦେଖନ୍ତୁ ଦେଖନ୍ତୁ ପିତାମହ—ସେଇ ଲେଲିହାନ ଅଗ୍ନିଶିଖା ଗର୍ଭରୁ କିପରି ଜନ୍ମ ନେଉଛନ୍ତି ମହା ତେଜମୟୀ ନାରୀ—ମହାଦେବୀ—ମହା ବୈଷ୍ଣବୀ !!

[ କ୍ରମେ ଅଗ୍ନି ଶିଖା ରୂପାନ୍ତରିତ ହେଲା ଏକ ତେଜମୟୀ ନାରୀ ମୂର୍ତ୍ତିରେ । ଦେବଗଣ ଦେଖିଲେ ତାଙ୍କ ସମ୍ମୁଖରେ ଉଭା ହୋଇଛନ୍ତି ଦଶଭୁଜା ଦୁର୍ଗା । ]

ବ୍ରହ୍ମା—ଜୟ ମା ଦୁର୍ଗେ ଦୁରିତନାଶିନୀ !

ଦେବଗଣ—ଜୟ ଦୁରିତନାଶିନୀ ମା ଦୁର୍ଗାଙ୍କର ଜୟ !

ଦୁର୍ଗା—ଦେବତାମାନଙ୍କର ଦୁର୍ଗତି କାଳରେ ମୁଁ ଅନଳ ଗର୍ଭରୁ ଜନ୍ମ ନେଇଛି ବୋଲି ପିତାମହ ବ୍ରହ୍ମା ମୋର ନାମକରଣ କଲେ—ଦୁର୍ଗା ।···କିନ୍ତୁ ଦେବତାମାନଙ୍କୁ କିପରି କି ଦୁର୍ଗତିରୁ ମୁଁ ରକ୍ଷା କରିବି ମୁଁ ତ ଜାଣିନାହିଁ ?

ଇନ୍ଦ୍ର—ମହିଷାସୁର ପ୍ରତାପରେ, ଶୁମ୍ଭ ନିଶୁମ୍ଭ ଦେବତାମାନଙ୍କ
ଉପରେ ଅତ୍ୟାଗ୍ରହ କରି ସ୍ୱର୍ଗପୁର ଅଧିକାର କରି ରହିଛନ୍ତି ।

ପ୍ରଥମ ଦେବତା—ନିଜେ ଇନ୍ଦ୍ରଦେବ ସ୍ୱର୍ଗପୁରୀରୁ ବିତାଡ଼ିତ ।

ଦ୍ୱିତୀୟ ଦେବତା—ତୁମେ ମହିଷାସୁରକୁ ବଧ ନ କଲେ ଦେବତା-
ମାନେ ନରକର କୀଟ ଭଳି ଦୁର୍ଦ୍ଦଶା ଭୋଗିବେ ।

ଦୁର୍ଗା—ମୁଁ ବଧ କରିବି ?

ବିଷ୍ଣୁ—ହଁ ! ବ୍ରହ୍ମା ବର ଦେଲାବେଳେ କହିଥିଲେ ଜଣେ ନାରୀ
ହାତରେ ହିଁ ମହିଷାର ମୃତ୍ୟୁ ହେବ ।

ବ୍ରହ୍ମା—ହଁ ମା ଦୁର୍ଗେ—ତୁମରି ହାତରେ ହେବ ମହିଷାର ମୃତ୍ୟୁ ।
ଦୁର୍ଗା—କିନ୍ତୁ ମୋ ହାତରେ ଅସ୍ତ୍ର କାହିଁ ? ମୋ ହାତ ଯେ ଶୂନ୍ୟ !
ମତେ ଅସ୍ତ୍ର ଦିଅନ୍ତୁ ।

—ଗୀତ—

ଦିଅ ଦେବଗଣେ ମୋର ଶୂନ୍ୟ ହସ୍ତ ଭରି,
ମୋର ଶୂନ୍ୟ ହସ୍ତ ଭରି ।
ଦଶ ହସ୍ତେ ମୋର ଦଶ ପ୍ରହରଣ ଧରି
ଭେଟିବି ମୁଁ ଦୈତ୍ୟରାଜ,
ଭେଟିବି ଦୁଷ୍ଟକୁ ରଣେ ପିନ୍ଧି ରଣ ସାଜ । ୧ ।

ଇନ୍ଦ୍ର—କି ଅସ୍ତ୍ର ଦେବୁ ମାତା ?
ଦୁର୍ଗା—ଦେବଗଣ, ନିଜ ନିଜର ଅସ୍ତ୍ର ମତେ ଦିଅନ୍ତୁ ।

—ଗୀତ—

ଶଙ୍ଖ ଚକ୍ର ଗଦା ବିଷ୍ଣୁ ଦିଅନ୍ତି ମୋ' କରେ,
ବିଷ୍ଣୁ ଦିଅନ୍ତି ମୋ' କରେ,
ଆବର୍ତ୍ତିକ ଚକ୍ର ସୂର୍ଯ୍ୟ ଦିଅନ୍ତି ନିକଟରେ,
ଗଣ୍ଡାପତ୍ତି ନାଗପାଶ,
ତ୍ରିଶୂଳ ପିନାକ ଧନୁ ଦିଅନ୍ତି ମହେଶ । ୨ ।
ବଜ୍ରକାଠି ବଜ୍ର ଶକ୍ତି ଦିଅନ୍ତି ମଘବା,
ମଟେଠ ଦିଅନ୍ତି ମଘବା,
କାଳନେମୀ କାଳଦଣ୍ଡ—ଖଡ୍ଗ ବିଶ୍ୱଦେବା
ଶୀଳଚକ୍ର ବୈଶ୍ୱାନର,
ମହୌଷଧି ଦିଅନ୍ତି ଶ୍ରୀ ଅଶ୍ୱିନୀକୁମାର । ୩ ।

ବିଷ୍ଣୁ—ଏଇ ନିଅ ଦେବୀ, ତେତିଶକୋଟି ଦେବଦେବୀଙ୍କର ସମସ୍ତ ଅସ୍ତ୍ର ତୁମକୁ ପ୍ରଦାନ କରୁଚୁ ।

(ସମସ୍ତେ ନିଜ ନିଜର ଅସ୍ତ୍ର ପ୍ରଦାନ କଲେ)

ଦୁର୍ଗା—ଅସ୍ତ୍ର ତ ପାଇଲି—ପୁଣି ବାହନ ?

ଦେବତା—ଦେବୀଙ୍କ ବାହନ !!

—ଗୀତ—

ଦୁର୍ଗା— ଅଙ୍ଗ ଲାଗି ହେବ ମୋର ଅମଳାନ ପାଟ,
ମୋର ଅମଳାନ ପାଟ,
ବାହନ ମୋ ସିଂହ ଚଣ୍ଡୀ ଚାମୁଣ୍ଡା ଯେ ଥାଟ,
ସବୁ ଠୁଳ କର ଆଣି,
ବାହନ ବନେ ଦୈତ୍ୟକୁ ପାଟବ କ ଜାଣି ? । ୪ ।

ଇନ୍ଦ୍ର—ଦେବଗଣଙ୍କ ସମସ୍ତ ବାହନର ଶକ୍ତିକୁ ଏକତ୍ର ଠୁଳ କରି ଏଇ ପଶୁରାଜ ସିଂହକୁ ତମଠାରେ ଅର୍ପଣ କଲୁ ଦେବୀ ! ଏଇ ତମର ବାହନ ।

ଦୁର୍ଗା—ଏବେ ତା' ହେଲେ ଦେବଗଣ ମୋର ଏଇ ଖଣ୍ଡାଖର୍ପର-ଧାରିଣୀ ସିଂହବାହିନୀ ମୂର୍ତ୍ତି ଦେଖନ୍ତୁ ।

(ପର ମୁହୂର୍ତ୍ତିରେ ଦେଖାଗଲା ଦେବୀ ଦଶ ହସ୍ତରେ ଦଶ ପ୍ରହରଣ ଧରି ସିଂହବାହିନୀ ମୂର୍ତ୍ତି ଧାରଣ କରିଛନ୍ତି ।)

ବ୍ରହ୍ମା—ଏ କଣ ମା' କାତ୍ୟାୟନୀ···ଏ କି ଭୟଙ୍କର ମୂର୍ତ୍ତି ଆମେ ଦେଖୁଚୁ !

ବିଷ୍ଣୁ—ଯୋଜନ ଯୋଜନ ବ୍ୟାପୀ ଏଇ କରାଳ ମୂର୍ତ୍ତି ବିଶ୍ୱବ୍ରହ୍ମାଣ୍ଡକୁ ଗ୍ରାସ କରିବ ନାହିଁ ତ ?

ଦୁର୍ଗା—ଭୟନାହିଁ ଦେବଗଣ ! ଦେଖ ମୋର ସେ କରାଳ ମୂର୍ତ୍ତି ଆଉ ନାହିଁ । ମୁଁ ବର୍ତ୍ତମାନ ମୋହିନୀ ରୂପ ଧାରଣ କରି ମହିଷାସୁର ରାଜ୍ୟର ରତ୍ନଗିରିକୁ ଯାତ୍ରା କରୁଚି ।···ଏଇ ଶୂନ୍ୟ ମାର୍ଗରେ ଥାଇ ତୁମେମାନେ ସବୁ ଦେଖିପାରିବ ।

(ମୋହିନୀ ମୂର୍ତ୍ତି ଧାରଣ କରି ଦେବୀଙ୍କର ପ୍ରସ୍ଥାନ ।)

# ଚତୁର୍ଥ ଦୃଶ୍ୟ

[ମହିଷାର ରାଜପ୍ରାସାଦ । ଉପସ୍ଥିତ—ମହିଷା ଓ ରାଣୀ ଚନ୍ଦ୍ରାବତୀ]

ଚନ୍ଦ୍ରା—ରତ୍ନଗିରିର ସେ ଭୁବନମୋହିନୀ ନାରୀକୁ ଆଣିବା ପାଇଁ ତୁମେ ଚଣ୍ଡମୁଣ୍ଡଙ୍କୁ ପଠାଇଛ ?

ମହିଷା—ସେଥିପାଇଁ ମହିଷାର ପାଟରାଣୀ ଚନ୍ଦ୍ରାବତୀ ଅସନ୍ତୁଷ୍ଟ ହେଉଛନ୍ତି କାହିଁକି ?

ଚନ୍ଦ୍ରା—ମୋ' କଥା ମୁଁ କହୁନି ସ୍ୱାମୀ ! କିନ୍ତୁ ଜନ-ମାନବହୀନ ରତ୍ନଗିରିକୁ ଏମିତି ଅପୂର୍ବ ସୁନ୍ଦରୀ ତରୁଣୀ ଆସିଲା କେଉଁଠୁ ?

ମହିଷା—ସେ କଥା, ସେ ରାଣୀହଂସପୁରକୁ ଆସିଲା ପରେ ତା'ଠାରୁ ବୁଝିବ ।

ଚନ୍ଦ୍ରା—ବ୍ରହ୍ମାଙ୍କ ବର କଥା ସ୍ମରଣ ଅଛି ତ ପ୍ରଭୁ ? ଦେବତା-ମାନଙ୍କ କୋପ ଫଳରେ ଅଗ୍ନି ଗର୍ଭରୁ ଯୋଉ ନାରୀ ଜନ୍ମ ହୋଇଥିଲା ···

ମହିଷା—ସେଇ ନାରୀ ମୋହିନୀ ରୂପ ଧାରଣ କରି ରତ୍ନଗିରିରେ ମୋ' ପଥ ଚାହିଁ ବସିଛି···ହାଃ···ହାଃ ! କିଏ ? ଦୂତ ? କି ସମ୍ବାଦ ?

ଦୂତ—ଦୁଃସମ୍ବାଦ ପ୍ରଭୁ ! ରତ୍ନଗିରିର ସେଇ ଭୁବନମୋହିନୀ ନାରୀ ହାତରେ ସେନାପତି ଚଣ୍ଡମୁଣ୍ଡ ନିହତ ।

ମହିଷା—ମିଥ୍ୟା କଥା ।

ଦୂତ—ମିଥ୍ୟା ନୁହେଁ ଦୈତ୍ୟରାଜ ! ଏଇ ଦେଖନ୍ତୁ, ସେନାପତି-ଦୁହିଁଙ୍କର ମଥାର ମୁକୁଟ ।

ମହିଷା—ଆଶ୍ଚର୍ଯ୍ୟ ! ସାମାନ୍ୟ ଗୋଟାଏ ନାରୀ ବଧ କରିଛି ଚଣ୍ଡମୁଣ୍ଡଙ୍କୁ !!! କଣ, କଣ କରିବି ମୁଁ ! ଦୂତ, ଏଇ

ମୁହୂର୍ତ୍ତରେ ଯାଇ ଶୁମ୍ଭ ନିଶୁମ୍ଭଙ୍କୁ ସମ୍ବାଦ ଦିଅ—ସେମାନେ ନେହିଗିରିକୁ ଆସନ୍ତୁ ।

ଦୂତ—ଆଜ୍ଞା ମହାରାଜ !

ଚନ୍ଦ୍ରା—ରହ ଦୂତ ।

ମହିଷା—ରାଣୀ !

ଚନ୍ଦ୍ରା—ମୋ କଥା ମାନନ୍ତୁ ସ୍ୱାମୀ !

ମହିଷା—ନା, ମୁଁ କାହାର କଥା ଶୁଣିବି ନାହିଁ ।

—ଗୀତ—

ଚନ୍ଦ୍ରା— କରୁଛି ମିନତି ହେ ଦନୁଜପତି
ଦାସୀ ମନା ବାରେ ମାନ ହେ,
କୁଳସ୍ତ୍ରୀନା ନାରୀ ନୁହେଁ ତ କାହାର
ନ ବଳା ତା'ଠାରେ ମନ ହେ । ପଦ ।

ମହିଷା—କୁଳ ଗୋତ୍ର ନୁହେ ରାଣୀ—ତା'ର ଅନନ୍ୟ ରୂପ-ଯୌବନ ମତେ ପାଗଳ କରିଛି ।

ଚନ୍ଦ୍ରା—ମୋ ମନରେ କିନ୍ତୁ ପାପ ଛୁଉଁଛି ସ୍ୱାମୀ—ସେ ସାମାନ୍ୟ ନାରୀ ନୁହେ ।

—ଗୀତ—

ଯେ ଦିନୁଁ ଏ ରାଜ୍ୟେ ରଖିଲ ସେ ପାଦ,
ଘଟାଇଲ କାହିଁ କେତେ ଯେ ପ୍ରମାଦ;
ଶୁଭେ ପେଚ୍‌ଛ ଧ୍ୱନି, ଉଡ଼ୁଛି ଶକୁନି,
ଅଶୁଭ ଲକ୍ଷଣମାନ ହେ । ୧ ।

ଚନ୍ଦ୍ରା—ନେହିଗିରିକୁ ସେ ଆସିଲା ଦିନୁଁ ବିନା ମେଘରେ ବଜ୍ରପାତ ହେଉଛି—ଶୂନ୍ୟରୁ ଅଗ୍ନି ବୃଷ୍ଟି ହେଉଛି ।

ମନ୍ଥରା—ତମର ଏ ପ୍ରଳାପ ଶୁଣିବାକୁ ବେଳ ମୋର ନାହିଁ । ଯାଅ ।

ଚନ୍ଦ୍ରା—ପାପର ସୀମା ଅଛି ପ୍ରଭୁ ! ଆଜ ଏ ଅନ୍ୟାୟ ଅମାନ୍ତ କର ନାହିଁ ।

—ଗୀତ—

ଇନ୍ଦ୍ର ସିଂହାସନେ ଅଭିଷିକ୍ତ ହୋଇ
ବସୁଧା ସୁରୁଚେ ନର୍କ ଭୋଗ ଦେଲ;
ଏତେ ପାପ କଆଁ ଧରଣୀ ସହିବ ?
ବ୍ରହ୍ମା ବାଣୀ କର ଧ୍ୟାନ ହେ । ୨ ।

ମନ୍ଥରା—ମୋର ସବୁ ଧ୍ୟାନ ଧାରଣା ଲାଗିଛିରେ ସେହି ଭୁବନ-ମୋହିନୀ ନାରୀ ନିକଟରେ । ଆସ ଦୂତ !

(ଦୂତ ସହ ମନ୍ଥରାର ପ୍ରସ୍ଥାନ । ରାଣୀ କାନ୍ଦୁଥାନ୍ତି । )

## ପଞ୍ଚମ ଦୃଶ୍ୟ

[ ରତ୍ନଗିରି । ଶୁମ୍ଭ ଓ ନିଶୁମ୍ଭ ଆସିଲେ ]

ଶୁମ୍ଭ—ରତ୍ନଗିରିର ସୁନ୍ଦରୀ ଯୁବତୀଙ୍କୁ ବଳାତ୍କାରରେ ଧରି ନେଇ ଯିବାକୁ ମହିଷାସୁର ଆମକୁ ପତ୍ର ଲେଖିଲେ । ପତ୍ର ପାଇ ତୁରନ୍ତ ଆମକୁ ଆସିବାକୁ ପଡ଼ିଲା ।

ନିଶୁମ୍ଭ—ଏଇ ତ ରତ୍ନଗିରି ପର୍ବତ । ଆମେ ଆସି ପହଞ୍ଚିଗଲୁଣି ।

ଶୁମ୍ଭ—ହଁ, ରତ୍ନଗିରିରେ ଆମେ ପହଞ୍ଚିଲୁଣି । ମାତ୍ର ସ୍ତ୍ରୀଟିଏ ଗୋଟାଏ ନାରୀ ପାଇଁ ଦାନବରାଜ ଏ ଅନର୍ଥ ସୃଷ୍ଟି କରିବା ଉଚିତ ହେଲା ନାହିଁ ।

ନିଶୁମ୍ଭ—ରତ୍ନଗିରିରେ ପହଞ୍ଚିଲା ପରେ ଆଉ ଏ ଚିନ୍ତା କରି ଲାଭ କ'ଣ ?

ଶୁମ୍ଭ—ଠିକ୍ କହିଛ ନିଶୁମ୍ଭ । ଆଉ ଏ ଚିନ୍ତା କରି ଲାଭ ନାହିଁ । ଆସ—କିଏ ସେ ସୁନ୍ଦରୀ ନାରୀ—କେଉଁଠି ଅଛି—ଅନ୍ୱେଷଣ କରି ଦେଖିବା, ଆସ ।

( ଏତିକିବେଳେ ମୋହିନୀରୂପଧାରିଣୀ ଦୁର୍ଗା ଆସିଲେ । ଅଧରରେ ସ୍ମିତ ହସ—ନୟନରେ କଟାକ୍ଷ । ରୂପଯୌବନର ଏ ସମ୍ଭାର ଦେଖି ଶୁମ୍ଭ ନିଶୁମ୍ଭ ମୁହୂର୍ତ୍ତକରେ ସବୁ କଥା ଭୁଲିଗଲେ । ଏପରିକି ନିଜତ୍ୱ ହରାଇବସିଲେ । )

ଶୁମ୍ଭ—ଆ-ହା-ହା—! ଆ-ହା— ! କି ଅପୂର୍ବ ରୂପ—କି ଯୌବନ !

ନିଶୁମ୍ଭ—କ ଆଖି—କ ନାକ—କ···କ···କ ଦନ୍ତପଙ୍କ୍ତି ।

ଶୁମ୍ଭ—ଏଭଳି ନାରୀରତ୍ନକୁ ଅଙ୍କଶାୟିନୀ କରିବାପାଇଁ ମହିଷାସୁର ପାଗଳ ହୋଇଯିବା ବିଚିତ୍ର ନୁହେଁ । ଆମେ ତାଙ୍କୁ ବୃଥା ଦୋଷ ଦେଉଥିଲୁ ।

ନିଶୁମ୍ଭ—ମୁଁ ଭାବୁଚି, ଆମେ ବି ପାଗଳ ହୋଇଯିବୁ ।

ଶୁମ୍ଭ—ଅସମ୍ଭବ କିଛି ? ମୋର ତ ମନ ସ୍ଥିର ରହୁନାହିଁ ।

ନିଶୁମ୍ଭ—ମୋର ମଧ୍ୟ । ଏଇ—ଏଣିକି ଆସିଲେଣି ।

( ଦୁର୍ଗା ନିକଟକୁ ଆସିଲେ )

ଶୁମ୍ଭ—ହେ···ହେ···ମନମୋହିନୀ ? ତୁମେ କିଏ ?

ଦୁର୍ଗା—କିଏ ଆଉ ? ତୁମ ମନମୋହିନୀ ।

ନିଶୁମ୍ଭ—କି ଭାଗ୍ୟ—କି ଭାଗ୍ୟ ଆମର !

ଶୁମ୍ଭ—ତୁମ ଘର ?

ଦୁର୍ଗା—ମେରୁସ୍ଥଳୀ ।

ନିଶୁମ୍ଭ—ପିତା ?

ଦୁର୍ଗା—ଅଣାକାର ।

ଶୁମ୍ଭ—ଗୋତ୍ର ?

ଦୁର୍ଗା—ନିରାକାର ।

ଶୁମ୍ଭ—ବୁଝିଗଲୁ ।

ଦୁର୍ଗା—ତମର ପରିଚୟ ତ ଦେଲନାହିଁ ?

ନିଶୁମ୍ଭ—ଆମେ ଶୁମ୍ଭ ନିଶୁମ୍ଭ ।

ଶୁମ୍ଭ—ଦାନବ ବୀର ମହିଷାସୁର ଆମକୁ ଏଠିକି ପଠେଇଛନ୍ତି ।

ଦୁର୍ଗା—ତେବେ ମୁଁ ମଧ୍ୟ ବୁଝିଗଲି ।

—ଗୀତ—

ହେ ଶୁମ୍ଭ ନିଶୁମ୍ଭ ଲୁଟିଲା ମୋ ଦମ୍ଭ ବିବେକ ଗଲାଣି ନିଜ,
ତୁମ ସହ ମୋର ପ୍ରୀତି-ପୁଷ୍ପଡୋରି ବିଧାତା ଥିଲା କି ସର୍ଜି ହେ
କେନି ଦୈତ୍ୟକୁମରି,
ମୁହିଁ ଅଟେ କି ଯୋଗ୍ୟ ତୁମରି ହେ । ୧ ।

ଶୁମ୍ଭ—କଥା କହିଲ କି କୁହୁ ବରଷିଲ ପାରୁନୁ ତ ବାଟେ ଭୁଲି,
କେଉଁ ପଥେ ମାରି ପେଷିଲା ତା'ଶର
ପାରୁନୁ ସେ ଭେଦ ହେଳି ହେ,
ତମ ଚରଣେ ନିକି,
ଦେଲୁ ଏ କେନି ପରାଣ ଵିକି ହେ । ୨ ।

ଦୁର୍ଗା—ମହିଷାର ଆଶେ ଆସିଥିଲି ଶେଷେ ପଡ଼ିଲି ତମ ଫାନ୍ଦରେ,
ହୋଇ ବରବେଶ କରିବ ପ୍ରବେଶ ପୁରେ ଆମ ଆନନ୍ଦରେ ହେ
ହେବି ତୁମ ଘରଣୀ,
ପିତା କରିବେ ବାଟବରଣୀ ହେ । ୩ ।

ଶୁମ୍ଭ—ଚାଲ ଚାଲ ସୁନ୍ଦରୀ—ବିବାହର ଆୟୋଜନ କରିବା ଚାଲ ।
ନିଶୁମ୍ଭ—ମହିଷାସୁର ଚୁଲିକୁ ଯାଉ—ତୁମେ ଆମ ସାଙ୍ଗରେ ଚାଲ ।
ଦୁର୍ଗା—ହାଃ-ହାଃ···ଶୁଣ—ଆହୁରି କଥା ଅଛି ।
ଶୁମ୍ଭ—କଣ ?
ଦୁର୍ଗା—ନୃତ୍ୟଗୀତରେ ମୋର ଭାରି ଶରଧା ।
ଶୁମ୍ଭ—କି ଭାଗ୍ୟ ! ଆମେ ତ ନୃତ୍ୟଗୀତରେ ପ୍ରବୀଣ ।
ଦୁର୍ଗା—ଟିକିଏ ତମ ଗୀତ ଶୁଣନ୍ତି—ନୃତ୍ୟ ଦେଖନ୍ତି
ଶୁମ୍ଭ—ଏଇ ସାଙ୍ଗେ ସାଙ୍ଗେ ।

—ଗୀତ—

ମୀନନୟନା ଲୋ       ଝୀନବସନା ଲୋ,
ମନା ତୁ ଆଉ କରନା । ପଦ ।
ସଜ ସରସିଜ       ଜିଣି ବଦନ କାନ୍ତି
ମଦନ ଜଳି ମରେ, ଜଳି ମରଇ ରତି,
ଦନୁଜ ଦର୍ପହରା
ଏ ତୋ' ରୂପପସରା
କଜଳରେଖା ତଳେ ଚପଳା କରେ ଖେଳା
ସଜଣି ରଜନୀ ଲୋ ବିଫଳ ନୋହୁ ଭଲ
କି ଫଳ ଏ ଜୀବନେ,
କି ଫଳ ଏ ଜୀବନେ ତୋ ଯଉବନ ବିନା । ୧ ।

ଶୁମ୍ଭ—ଏଥର ତୁମେ ଗାଅ—ଆମେ ନାଚୁଛୁ ।

ଦୁର୍ଗା—ଆଚ୍ଛା, ମାତ୍ର ନାଚିଲାବେଳେ ତୁମେ ତାଙ୍କ ମସ୍ତକରେ ଓ ସେ ତୁମ ମସ୍ତକରେ ହାତ ରଖି ନାଚିବ ।

—ଗୀତ—

ଏ ତୁମ୍ଭ ନୃତ୍ୟଗୀତ
ଦେଖି ହେଲି ମୁଁ ପ୍ରୀତ
ହେଲି ଆଜଠୁଁ ଜାଣି ତୁମେ ମୋ ପ୍ରାଣମିତ,
ଆରୋହଣ ମୂର୍ଚ୍ଛନା ଦେଖିବ ବଳେ ଚିତ୍ତ
ଏକ ମସ୍ତକେ ଆନ,
ଏକ ମସ୍ତକେ ଆନ ରଖ ଲୋ ନେଇ ହସ୍ତ । ୨ ।

( ଶୁମ୍ଭ ନିଶୁମ୍ଭ ପରସ୍ପରର ମସ୍ତକରେ ହାତ ରଖି ନାଚୁଥାନ୍ତି । )

ଶୁମ୍ଭ, ନିଶୁମ୍ଭ—(ଯନ୍ତ୍ରଣାରେ) ଆଃ...

ଶୁମ୍ଭ—ମୋହିନୀ ମାୟାରେ ଅନ୍ଧ ହୋଇ ଆମେ ଏକ କର ଅନ୍ୟ ଶିରେ ନେଇ ରଖିଲୁ । ବ୍ରହ୍ମାଙ୍କ ବାଣୀ ସତ୍ୟ ହେଲା ।

ନିଶୁମ୍ଭ—ପ୍ରଳୟ ଅଗ୍ନିରେ ଆମେ ଜଳି ଭସ୍ମ ହୋଇଯାଉଚୁ !

(ଶୁମ୍ଭ ନିଶୁମ୍ଭ ଦୁହିଁଙ୍କର ମୃତ୍ୟୁ)

## ଷଷ୍ଠ ଦୃଶ୍ୟ

[ ମହିଷାର ମନ୍ତ୍ରଣା ଗୃହ । ଅତି ଉତ୍ତେଜିତ ଅବସ୍ଥାରେ ମହିଷାର ପ୍ରବେଶ । ସାଙ୍ଗରେ ମନ୍ତ୍ରୀ । ]

ମହିଷା—ନା, ମୁଁ କାହାର କଥା ଶୁଣିବ ନାହିଁ ।

ମନ୍ତ୍ରୀ—ଟିକଏ ଧୀର ଚିତ୍ତରେ ବିଚାର କରନ୍ତୁ ଦୈତ୍ୟରାଜ ! ସେ ନାରୀ ଦୈବୀଶକ୍ତିସଂପନ୍ନା ହୋଇ ନ ଥିଲେ ଶୁମ୍ଭ ନିଶୁମ୍ଭ ପରି ସ୍ୱର୍ଗବିଜୟୀ ଦୈତ୍ୟଙ୍କୁ ବଧ କରିଥାନ୍ତା ?

ମହିଷା—ପ୍ରଳାପ ବନ୍ଦ କର ତୁମେ ମୋର ଚାମର, ବିଡ଼ାଳାକ୍ଷ, ରକ୍ତବୀର୍ଯ୍ୟ, ବୀରଘଣ୍ଟ, କାଳଦଣ୍ଡ ଆଉ ଧୂମ୍ରଲୋଚନ ପ୍ରଭୃତି ଅଷ୍ଟବଂଶ ସେନାପତିଙ୍କୁ ଆଦେଶ ଦିଅ—ସେମାନେ ରତ୍ନଗିରିକୁ ଯୁଦ୍ଧଯାତ୍ରା କରି ସେ ମାୟାବିନୀ ନାରୀକୁ ହତ୍ୟା କରନ୍ତୁ—ଯାଅ ।

## ସପ୍ତମ ଦୃଶ୍ୟ

[ ଯୁଦ୍ଧକ୍ଷେତ୍ର । ମହିଷାର ସେନାପତିମାନଙ୍କ ସହିତ ଦୁର୍ଗାଙ୍କର ଯୁଦ୍ଧ । ···ଯୁଦ୍ଧ କରୁ କରୁ ସେମାନେ ଅନ୍ତରାଳରେ ଅଦୃଶ୍ୟ ହୋଇଗଲେ । ଅନ୍ତରାଳରୁ ଯୁଦ୍ଧର କୋଳାହଳ ଶୁଣାଯାଉଥାଏ । ···ଏହି ସମୟରେ ଅନ୍ୟ ଦିଗରୁ ପ୍ରବେଶ କଲେ ବିଷ୍ଣୁଙ୍କ ସହିତ ଇନ୍ଦ୍ର ଓ ଦେବଗଣ । ]

ଇନ୍ଦ୍ର—ଦେଖନ୍ତୁ, ଦେଖନ୍ତୁ ତ ନାରାୟଣ, ମା' ଦୁର୍ଗାଙ୍କର ଚଣ୍ଡୀ ଚାମୁଣ୍ଡା ଦଳ କିପରି ମହିଷାର ଅଷ୍ଟବଂଶ ସେନାପତିଙ୍କୁ ନିର୍ମୂଳ କରିଦେଲେଣି ।

ବିଷ୍ଣୁ—ଏଥର ନିଜେ ମହିଷାର ପାଳି ।

ଦେବଗଣ—ଜୟ ମା ଦୁର୍ଗତିନାଶିନୀ ଦେବୀ ଦୁର୍ଗାଙ୍କର ଜୟ !

(ସମସ୍ତଙ୍କର ପ୍ରସ୍ଥାନ)

# ଅଷ୍ଟମ ଦୃଶ୍ୟ

[ ମହାରାଷ୍ଟ୍ରାର ମନ୍ତ୍ରଣାଗୃହ । ଯୁଦ୍ଧରେ ବିପର୍ଯ୍ୟୟର କାହାଣୀ ଶୁଣି ମହାରାଷ୍ଟ୍ରା ମର୍ମାହତ । ଉପସ୍ଥିତ—ରାଣୀ ଚନ୍ଦ୍ରାବତୀ ଓ ମନ୍ତ୍ରୀ ]

ଚନ୍ଦ୍ରା—ଉଠ ମହାରାଜ ! ଉଠ, ଧୈର୍ଯ୍ୟ ଧର !

ମନ୍ତ୍ରୀ—ସାରା ରାଜ୍ୟ ବର୍ତ୍ତମାନ ଶ୍ମଶାନ ପରି ଦେଖାଯାଉଛି । ଏଣିକି ନିଜ ଜୀବନ ରକ୍ଷା କରିବା କଥା । ଆଦେଶ କରନ୍ତୁ, ମୁଁ ଚନ୍ଦ୍ରଗିରିକୁ ଯାଇ ସେହି ମହାଶକ୍ତି ମହାଦେବୀଙ୍କର ଶରଣ ଭିକ୍ଷା କରିବି ।

ଚନ୍ଦ୍ରା—ମହାମନ୍ତ୍ରୀ ଠିକ୍ କଥା କହୁଛନ୍ତି ସ୍ୱାମୀ ! ତୁମେ ଆସ—ଅନ୍ତଃପୁରକୁ ଆସ ।

( ହଠାତ୍ ଉଠି ବସି ମହାରାଷ୍ଟ୍ରା ପୁଣି ଉତ୍ତେଜିତ ଅବସ୍ଥାରେ ପଦ ଚାରଣା କଲା । )

ମହାରାଷ୍ଟ୍ରା—ରାଣୀ !

ଚନ୍ଦ୍ରା—କୁହ ମହାରାଜ !

ମହାରାଷ୍ଟ୍ରା—ତମେ ମତେ ସମରବେଶରେ ସଜାଇ ଦିଅ । ମୁଁ ଯୁଦ୍ଧଯାତ୍ରା କରିବି ।

ଚନ୍ଦ୍ରା—ତମ ପାଦ ଧରି ମିନତି କରୁଛି ସ୍ୱାମୀ—ତୁମେ ଏ ସଂକଳ୍ପ କର ନାହିଁ ।

ମହାରାଷ୍ଟ୍ରା—ତୁମେ ବୀରପତ୍ନୀ । କିନ୍ତୁ ରମଣୀ ହୋଇ ମତେ ଏଇ ଉପଦେଶ ଦେଉଛ ? ମୁଁ ଯଦି ସୈନ୍ୟ ସେନାପତି ସବୁ ହରାଇ ନିଃସ୍ୱ ସମ୍ବଳହୀନ ହୋଇପଡ଼ିଥାଏ, ତେବେ ଗୋଟାଏ ସ୍ତ୍ରୀ ନିକଟରେ ପ୍ରାଣ ଭିକ୍ଷା କରି ବଞ୍ଚିରହିବାରେ ମୋର କି ପୌରୁଷ ରକ୍ଷା ହେବ ? ରାଣୀହଂସପୁରରେ ତମରି ପଣତତଳେ

ଲୁଚି ରହିଲେ ତମର ସ୍ୱାମୀ ବୋଲି ତମେ ଗର୍ବ କରିପାରିବ ତ ?
...କୁହ—ଉତ୍ତର ଦିଅ ।

(ଚନ୍ଦ୍ରା ବିଚଳିତ ହୋଇପଡ଼ିଲେ । ଆଖିରେ ଲୁହ ।)

ରାଣୀ—ନା—ନା ସ୍ୱାମୀ—ମୁଁ ଏହା ଚାହେଁନା । ବୀର ତୁମେ—
କ୍ଷାତ୍ରଧର୍ମ ପାଳନ ତୁମର କର୍ତ୍ତବ୍ୟ । ଆସ, ତୁମକୁ ନିଜ ହାତରେ
ମୁଁ ବୀର ବେଶରେ ସଜାଇ ଦେଉଛି ।

( ଗୀତ ଗାଇଗାଇ ରାଣୀ ମହାରାଜାଙ୍କୁ ଯୁଦ୍ଧବେଶରେ ସଜାଇଲେ । )

—ଗୀତ—

ଶିରେ ଶିରସ୍ତ୍ରାଣ କରୁ ମଣ୍ଡନ
କପାଳରେ ଦେଲି ରକ୍ତଚନ୍ଦନ । ୧ ।
ଶୁଭ୍ର ଉପବୀତ ଶୋହୁ ସ୍କନ୍ଧରେ
ସ୍ୱର୍ଣ୍ଣ ବଳୟ ଏ ମଣିବନ୍ଧରେ । ୨ ।
ବାହୁ ବେଷ୍ଟନରେ କରୁ କବଚ
ପୃଷ୍ଠଦେଶେ ଢାଲ ଧନୁ ନାରାଚ । ୩ ।
ପିନ୍ଧା ସୁବର୍ଣ୍ଣର ପାଞ୍ଜି ବକ୍ଷରେ
ଝୁଲୁ କରବାଳ କଟିଦେଶରେ । ୪ ।
ମାତା ମଙ୍ଗଳାଙ୍କୁ କରି ସ୍ମରଣ
ଆଖିଲୁହରେ ଧୋଇଲି ଚରଣ । ୫ ।
ଶେଷେ ସର୍ବ ଶୁଭେ ଦେଲି ବିଦାୟ
ଶଙ୍ଖ ସହାରେ ଯୁଦ୍ଧେ କର ଜୟ । ୬ ।

## ଶେଷ ଦୃଶ୍ୟ

[ ଯୁଦ୍ଧକ୍ଷେତ୍ର—ଯୁଦ୍ଧରତ ମହିଷା ଓ ଦୁର୍ଗା ]

ମହିଷା—ମାୟାବିନୀ କୁହୁକିନୀ ନାରୀ ! ମୋ ହାତରୁ ଏବେ ତୋର ଆଉ ନିସ୍ତାର ନାହିଁ ।

ଦୁର୍ଗା--ତା' ପୂର୍ବରୁ ମୋର ଏଇ ଶୂଳ ତୋର ବକ୍ଷ ଭେଦ କରିବ । ( ଶୂଳ ପ୍ରୟୋଗ କଲେ । କିନ୍ତୁ ତାହା ମହିଷାର ବକ୍ଷ • ଭେଦ କଲା ନାହିଁ ।)

ମହିଷା—ହାଃ-ହାଃ-ହାଃ ।

( ଅଟ୍ଟହାସ୍ୟ କରି ମହିଷା ଅନ୍ତର୍ଦ୍ଧାନକୁ ଗଲାଗଲା )

ଦୁର୍ଗା—ମୁଁ ଥରକୁ ଥର ଶୂଳ ଭେଦ କରୁଛି, ମାତ୍ର ତାହା ମହିଷାର ଲୋମମୂଳ ସୁଦ୍ଧା ସ୍ପର୍ଶ କରୁନାହିଁ । କାହିଁକି—କାହିଁକି ମୋ ଶକ୍ତି ବ୍ୟର୍ଥ ହୋଇଯାଉଛି ?

ଶୂନ୍ୟବାଣୀ—ଶୁଣ ଭବାନୀ ! ମୁଁ ସର୍ବମଙ୍ଗଳା । ତୁମକୁ ସ୍ମରଣ କରାଇଦେଉଛି ତୁମେ ତୁମ ବସନ ଭୂଷଣ ତ୍ୟାଗ କରି ବିବସନା ନ ହେଲେ ତୁମ ଅସ୍ତ୍ରରେ ମହିଷାର ମୃତ୍ୟୁ ହେବ ନାହିଁ ।

ଦୁର୍ଗା—ଏଁ ! ମୋ ଅନ୍ତର ଭିତରେ ମା ସର୍ବମଙ୍ଗଳା ମତେ ଚେତାଇ ଦେଉଛନ୍ତି—ମୁଁ ମୋର ଅଙ୍ଗବସ୍ତ୍ର ତ୍ୟାଗ ନ କଲେ ମୋ ହାତରେ ମହିଷାର ମୃତ୍ୟୁ ହେବନାହିଁ ! କଣ କରିବି ମୁଁ ? ଏଇ ତ ମହିଷା କରାଳ ମୂର୍ତ୍ତି ଧରି ମୋ ଆଡ଼କୁ ଧାଇଁଆସୁଛି । ଆଉ ବିଳମ୍ବ କଲେ ରକ୍ଷା ନାହିଁ । ନା—ଏ ଧରଣୀକୁ ପାପମୁକ୍ତ କରିବାପାଇଁ ମୁଁ ବସନଭୂଷଣ ତ୍ୟାଗ କରି ବିବସନା ହେବି । (ବସନ-ଭୂଷଣ ତ୍ୟାଗ କଲେ)

ମହିଷା—ଏଇ ଥର···ଏଇ ଥର ତୋ ନିଜକୁ ତୁ···(ଦୁର୍ଗାଙ୍କର ବିବସନା ରୂପ ଦେଖି ଅଟକିଗଲେ) ଇଏ କି ବିଭତ୍ସ ରୂପ ମୁଁ

ଦେଖୁଛ !! ନାରୀ ତୁମେ—ତୁମ ଅଙ୍ଗରେ ବସନ ନାହିଁ, ଭୂଷଣ ନାହିଁ !!

—ଗୀତ—

ଜାନୁ ପର୍ଯ୍ୟନ୍ତ ମୁକ୍ତ ନାହିଁ ଅଙ୍ଗବାସ,
ମୁକ୍ତକେଶ ମୁକ୍ତବେଶ ଦେଖି ଲାଗେ ତ୍ରାସ ।
ଦେଖି ଏ ସ୍ୱରୂପ ମୁଁ ଯେ ହୁଏ ହୀନବଳ,
ବକ୍ଷ ମୋର ଲକ୍ଷ୍ୟ କରି ଆସଇ ତ୍ରିଶୂଳ ।
ଜାଣିଲି ମୁଁ ବ୍ରହ୍ମାବାଣୀ ହୋଇଲା ଏବେ ସତ୍ୟ,
ବିବସନା ନାରୀ ହସ୍ତେ ହୋଇଲି ମୁଁ ହତ ।

( କ୍ରମେ ମହିଷାସୁର ଅବଶ ହୋଇପଡ଼ୁଥାଏ । ଏହି ଅବସରରେ ଦୁର୍ଗା ମହିଷାର ବକ୍ଷଦେଶରେ ଶୂଳ ଭେଦ କଲେ । ମହିଷାର ମୃତ୍ୟୁ ହେଲା । ଆନନ୍ଦବଶରେ ଦେବଗଣ ଶୂନ୍ୟରୁ ପୁଷ୍ପ ବୃଷ୍ଟି କଲେ । )

ଦେବଗଣ—ଜୟ ମା ସିଂହବାହିନୀ ମହିଷମର୍ଦ୍ଦିନୀ ଦେବୀ ଦୁର୍ଗାଙ୍କର ଜୟ !

—ବନ୍ଦନା—

ଜୟ ଜୟ ଦୁର୍ଗା ମାଗୋ ଦୁର୍ଗତିନାଶିନୀ
ଜୟ ଜୟ ଦୁର୍ଗା ମାଗୋ ସଙ୍କଟତାରିଣୀ । ୧ ।
ଜୟ ଜୟ ଦୁର୍ଗା ମାଗୋ ସଦାଶିବଜାୟା
ଶତଦାନ୍ତ ଜନକକୁ ଜଣି ତୋର କାୟା । ୨ ।
ଦୈତ୍ୟକୁଳଦଳନୀ ମା' ମହିଷ-ମର୍ଦ୍ଦିନୀ
ହୀନ ଜନ ଅଭ୍ରାଜନ କରେ ମୁଁ ବନ୍ଦିନୀ । ୩ ।
ଜୟ ମା ସିଂହବାହିନୀ ଜୟ ଆଦ୍ୟମାତ
ଶ୍ରୀପାଦପଦ୍ମେ ସ୍ୱୟଂକର କରେ ପ୍ରଣିପାତ । ୪ ।